# ଅମର ଚରିତ



ଗଙ୍ଗାଧର ମେହେର

ନିଉ ଷ୍ଟୁଡେଣ୍ଟସ୍ ଷ୍ଟୋରସ୍ ଲିଃ

# ଗଙ୍ଗାଧର ମେହେର

---

ଲେଖକ
ଅଧ୍ୟାପକ **ଶ୍ରୀଧର ଦାସ** ଏମ୍. ଏ., ଡି. ଲିଟ୍.

---

ଦ୍ୱିତୀୟ ସଂସ୍କରଣ

---

ପ୍ରକାଶକ—
ନିଉ ଷ୍ଟୁଡେଣ୍ଟସ୍ ଷ୍ଟୋର୍ସ
ବ୍ରହ୍ମପୁର : କଟକ : ସମ୍ବଲପୁର
୧୯୫୪

# ସୂଚୀପତ୍ର

ବିଷୟ | ପୃଷ୍ଠା
--- | ---

## —ସୂଚନା—

ଓଡ଼ିଆ ସାହିତ୍ୟରେ ଅଧୁନିକ ଯୁଗର ପ୍ରବର୍ତ୍ତନ କରି ଯେଉଁ କେତେକ କବି ଓ ଲେଖକ ସାହିତ୍ୟର ଇତିହାସରେ ସ୍ଥାୟୀ ଆସନ ଅର୍ଜ୍ଜନ କରି ଯାଇଅଛନ୍ତି, ସେମାନଙ୍କ ମଧ୍ୟରେ ଗଙ୍ଗାଧର ଅନ୍ୟତମ । ଏହି ସମୟକୁ ସାଧାରଣତଃ ରାଧାନାଥ ଯୁଗ ବୋଲି ଅଭିହିତ କରାଯାଉଥିଲେହେଁ, ଏହାର ସୃଷ୍ଟି ପାଇଁ ଗଙ୍ଗାଧର ଊଣା ଦାନ କରି ନାହାନ୍ତି । ତାଙ୍କୁ ଓଡ଼ିଆ ସାହିତ୍ୟାକାଶରେ ରାଧାନାଥ-ରୂପୀ ସୂର୍ଯ୍ୟଙ୍କର ଗୋଟିଏ ସାମାନ୍ୟ ଗ୍ରହ ବୋଲି ମନେ କରିବା ଭ୍ରମାତ୍ମକ । ସେ ପରମ୍ପରାଗତ ଓଡ଼ିଆ ସାହିତ୍ୟର ଆଦର୍ଶକୁ ପୂର୍ଣ୍ଣ ରୂପେ ତ୍ୟାଗ କରି ରାଧାନାଥଙ୍କ ସାହିତ୍ୟିକ ଆଦର୍ଶକୁ ଅନ୍ଧ ଭାବରେ ଅନୁସରଣ କରି ନ ଥିଲେ । ପରନ୍ତୁ ରାଧାନାଥଙ୍କ ଆଦର୍ଶ ସହିତ ପ୍ରାଚୀନ ରୀତିର ସମନ୍ୱୟ କରି ଗୋଟିଏ ସ୍ୱତନ୍ତ୍ର ପନ୍ଥା ବାହାର କରିଥିଲେ । ପ୍ରାଚୀନ ଯୁଗର ପୌରାଣିକ ବିଷୟ ବସ୍ତୁ, ରାଧାନାଥଙ୍କ ଭାଷାର ପ୍ରାଞ୍ଜଳତା, ଭଞ୍ଜ ଯୁଗର ସ୍ୱର ମାଧୁରୀ ଓ ସ୍ୱକୀୟ ଅନନ୍ୟ ପ୍ରକୃତିସୁଲଭ ଚିନ୍ତାଧାରର ସମାବେଶରେ ସେ ଅପୂର୍ବ କବିତା ରସ ସୃଷ୍ଟି କରି ଉତ୍କଳବାସୀଙ୍କୁ ପରିବେଷଣ କରିଅଛନ୍ତି । ବାସ୍ତବରେ ଗଙ୍ଗାଧର କେବଳ ରାଧାନାଥଙ୍କ ସମକକ୍ଷ ଥିଲେ ।

## —ବାଲ୍ୟଜୀବନ—

୧୮୬୨ ମସିହା ଅଗଷ୍ଟ ମାସ ୯ ତାରିଖ ଦିନ ଶ୍ରାବଣ ପୂର୍ଣ୍ଣିମା ତିଥିରେ ଗଙ୍ଗାଧର ବରପାଲି ଗ୍ରାମରେ ଭୂମିଷ୍ଠ ହୋଇଥିଲେ । ତାଙ୍କର ପିତାମହଙ୍କ ନାମ ସଦାଶିବ ମେହେର । ଚୈତନ୍ୟ ମେହେର ତାଙ୍କର ପିତା ଥିଲେ । ତାଙ୍କ ମାତାଙ୍କର ନାମ ସେବତୀ ଦେବୀ । ଚୈତନ୍ୟ ମେହେର ଜାତିରେ ଭୁଲିଆ ଥିଲେ ଓ କୌଳିକ ଲୁଗା ବୁଣା ବ୍ୟବସାୟ କରି ଅତି କଷ୍ଟରେ କୁଟୁମ୍ବ ପ୍ରତିପୋଷଣ କରୁଥିଲେ । ସମାଜରେ ଭୁଲିଆମାନଙ୍କର ସ୍ଥାନ ନିମ୍ନରେ ଓ ସେମାନେ ସାଧାରଣତଃ ଦରିଦ୍ର । ତେଣୁ ଗଙ୍ଗାଧରଙ୍କର ଶୈଶବ ଓ ବାଲ୍ୟକାଳ ଅଭାବ-ଅସୁବିଧା ମଧ୍ୟରେ ଅତିବାହିତ ହୋଇ-ଥିଲା । ଚୈତନ୍ୟ ମେହେର ଲୁଗାବୁଣାରେ ଦକ୍ଷ ଥିଲେ ଓ ଲୁଗାବୁଣା ସଙ୍ଗେ ସଙ୍ଗେ ବୈଦ୍ୟବୃତ୍ତି କରି ସାମାନ୍ୟ ଆୟ କରୁଥିଲେ । ଏହିପରି ଦରିଦ୍ର ପିତା-ମାତାଙ୍କର ସ୍ନେହ ଓ ଆଦର ଭିତରେ ଭାବୀ କବି ଗଙ୍ଗାଧର ବାଲ୍ୟଜୀବନ କଟାଇ ଥିଲେ ।

ବାଲ୍ୟ କାଳରେ ଗଙ୍ଗାଧର ତାଙ୍କ ପିତାମହ ସଦାଶିବଙ୍କ ସହିତ ପ୍ରାତଃସ୍ନାନ କରି ପ୍ରତ୍ୟହ ଗ୍ରାମରେ ଥିବା ଜଗନ୍ନାଥ ଦେବଙ୍କୁ ଦର୍ଶନ କରୁଥିଲେ । ସନ୍ଧ୍ୟା ସମୟରେ ଜଗନ୍ନାଥଙ୍କ ମନ୍ଦିରରେ ସଂକୀର୍ତ୍ତନ ହେଉଥିଲେ, ସେଥିରେ ମଧ୍ୟ ସେ ଯୋଗ ଦେଉଥିଲେ । ଏହିରୂପେ ବାଲ୍ୟକାଳରୁ ତାଙ୍କ ହୃଦୟରେ ଧର୍ମଭାବ ଦୃଢ଼ୀଭୂତ ହୋଇଥିଲା ।

ସେବତୀ ଦେବୀ ଗଙ୍ଗାଧରଙ୍କ ଉପରେ ତାଙ୍କର ସମସ୍ତ ସ୍ନେହ ଅଜାଡ଼ି ଦେଇଥିଲେ । ଚୈତନ୍ୟଙ୍କୁ ଲୁଗାବୁଣାରେ

ସାହାଯ୍ୟ କରିବା ଓ ରନ୍ଧନ ଆଦି ଗୃହକର୍ମ କରିବା ପରେ ତାଙ୍କର ଅବଶିଷ୍ଟ ସମୟ ଗଙ୍ଗାଧରଙ୍କ ଯତ୍ନ ନେବାରେ ଅତିବାହିତ ହେଉଥିଲା ।

ବରପାଲି ଗ୍ରାମଟି ସମ୍ବଲପୁର ଜିଲାର ବରଗଡ଼ ସବ୍‌ଡିଭି-ଜନରେ ମଧ୍ୟପ୍ରଦେଶ ନିକଟରେ ଅବସ୍ଥିତ । ସେତେବେଳେ ସମଗ୍ର ସମ୍ବଲପୁର ଜିଲାଟି ମଧ୍ୟପ୍ରଦେଶର ଅନ୍ତର୍ଗତ ଥିଲା ଓ ସେଠାର ଲୋକମାନଙ୍କର ଭାଷା ଓ ଆଚାର ବ୍ୟବହାର ଉପକୂଳ ଅଞ୍ଚଳର ଲୋକମାନଙ୍କ ଭାଷା ଓ ଆଚାର ବ୍ୟବହାରଠାରୁ ଅନେକ ପରିମାଣରେ ପୃଥକ୍ ଥିଲା । ଶାସନ କ୍ଷେତ୍ରରେ ମଧ୍ୟପ୍ରଦେଶ ସହିତ ସମ୍ବନ୍ଧ ଥିବାରୁ ସମ୍ବଲପୁରର ଲୋକେ ହିନ୍ଦୀ ଶିକ୍ଷା କରିବାକୁ ଲାଭଜନକ ମନେ କରୁଥିଲେ ଓ ସେମାନଙ୍କର ଭାଷା ଉପରେ ହିନ୍ଦୀ ଭାଷାର ଯଥେଷ୍ଟ ପ୍ରଭାବ ଥିଲା । ଜିଲା ମଧ୍ୟରେ ଯେଉଁ ସବୁ ବିଦ୍ୟାଳୟ ଥିଲା, ସେମାନଙ୍କରେ ହିନ୍ଦୀ ଶିକ୍ଷା ଦିଆଯାଉଥିଲା । ଓଡ଼ିଆ ବିଦ୍ୟାଳୟର ସଂଖ୍ୟା ଅତି ଅଳ୍ପ ଥିଲା । ସୌଭାଗ୍ୟବଶତଃ ବରପାଲି ଗ୍ରାମରେ ଗୋଟିଏ ଚାଟଶାଳୀ ଥିଲା ।

ସାତ ଆଠ ବର୍ଷ ବୟସ ବେଳକୁ ଗଙ୍ଗାଧର ଏହି ପାଠ-ଶାଳାକୁ ପ୍ରେରିତ ହେଲେ । ସେଠାରେ ସେ ଅଳ୍ପକାଳ ଅଧ୍ୟୟନ କରି ଅଛନ୍ତି, ଏହି ସମୟରେ ପାଠଶାଳାଟି ବନ୍ଦ ହୋଇଗଲା । ଚୈତନ୍ୟ ବାଘ ହୋଇ ଗଙ୍ଗାଧରଙ୍କର ଅଧ୍ୟାପନାଭାର ନିଜେ ଗ୍ରହଣ କଲେ । ଗ୍ରାମର ଅନ୍ୟକେତେକ ଛାତ୍ର ଗଙ୍ଗାଧରଙ୍କ ସହିତ ପଢ଼ିବାକୁ କ୍ରମଶଃ ଆସିଲେ । ଏହାପରେ ଗୋଟିଏ ନୂତନ ଚାଟଶାଳୀ ସ୍ଥାପିତ ହେଲା । ସେଠାରେ ଗଙ୍ଗାଧର ଅନ୍ୟାନ୍ୟ ଛାତ୍ରଙ୍କ ସହିତ ଜଗନ୍ନାଥ ଦାସଙ୍କ ଭାଗବତ ଓ ମଥୁରାମଙ୍ଗଳ ପ୍ରଭୃତି

ଅଧ୍ୟୟନ କଲେ । ଏହା ଛଡ଼ା ସେ ପଣକିଆ, ଗୁଣନ, ହରଣ ପ୍ରଭୃତି କେତେକ ଅଙ୍କ-ପାଠ ମଧ୍ୟ ଶିକ୍ଷା କରିଥିଲେ । ସେତେବେଳେ ତାଙ୍କ ପିତାଙ୍କର ଆର୍ଥିକ ଅବସ୍ଥା ବଡ଼ ଶୋଚନୀୟ ହୋଇଥିଲା । ଗଙ୍ଗାଧରଙ୍କର ଦୁଇଟି ଭଉଣୀ ଥିଲେ । ଗୋଟିଏ ତାଙ୍କଠାରୁ ବଡ଼ ଓ ଅନ୍ୟଟି ସାନ । ଏତେଗୁଡ଼ିଏ ପ୍ରାଣୀଙ୍କୁ ପୋଷିବାର ସାମର୍ଥ୍ୟ ଚୈତନ୍ୟ ମେହେରଙ୍କର ନ ଥିଲା । ଗଙ୍ଗାଧରଙ୍କ ବିବାହଲାଗି ତାଙ୍କୁ କିଛି ଋଣ କରିବାକୁ ମଧ୍ୟ ପଡ଼ିଥିଲା । ଏଣୁ ଏମାନଙ୍କର ଉଦରପୋଷଣଲାଗି ଚୈତନ୍ୟଙ୍କୁ ବହୁ କଷ୍ଟ ଭୋଗିବାକୁ ହେଉଥିଲା । ଖାଇବା ପାଇଁ ବାସନ ନ ଥିବାରୁ ବନ୍ଧୁଘରୁ ମାଗିଆଣି ସେମାନେ ଚଳୁଥିଲେ । ଅଭାବରେ ପଡ଼ି ଚୈତନ୍ୟ ଗଙ୍ଗାଧରଙ୍କର ପାଠପଢ଼ା ବନ୍ଦ କରିଦେବାକୁ ବାଧ୍ୟ ହେଲେ ।

ସେ ସମୟରେ କୌଣସି ପିତା ପୁତ୍ରକୁ ପଢ଼ାଇବାକୁ ଇଚ୍ଛା କରୁ ନ ଥିଲେ । ବିଦ୍ୟାଳୟରେ ଛାତ୍ର ଅନୁପସ୍ଥିତ ହେଲେ ଅଭିଭାବକମାନେ କଚେରିରେ ଦଣ୍ଡିତ ହେଉଥିଲେ । ସେଥିରେ ପୁଣି ଚାଟଶାଳି ଅବଧାନମାନଙ୍କର ଛାତ୍ରମାନଙ୍କୁ ଦଣ୍ଡ ଦେବା ନୀତି ଅତି ଉଗ୍ର ଥିଲା । ମୋଟ ଉପରେ ଚାଟଶାଳୀରେ କୌଣସି ପିଲାର ନାମ ଲେଖା ହେବା ପିତାମାତାଙ୍କ ପକ୍ଷରେ ଘୋର ଦୁର୍ଦ୍ଦଶାର କାରଣ ବୋଲି ମନେ କରାଯାଉଥିଲା ।

ଥରେ ବରଗଡ଼ର ତହସିଲଦାର ବରପାଲି ଗସ୍ତରେ ଆସିଥିଲେ । ଜଣେ ଗ୍ରାମବାସୀ ଚୈତନ୍ୟଙ୍କ ଉପରେ ଶତ୍ରୁତା ସାଧିବା ଉଦ୍ଦେଶ୍ୟରେ ତହସିଲଦାରଙ୍କ ନିକଟରେ ଗଙ୍ଗାଧରଙ୍କ ନାମ ଲେଖାଇ ଦେଲା । ତହସିଲଦାର ଚୈତନ୍ୟଙ୍କୁ ଡକାଇ

ନେଇ ଗଙ୍ଗାଧରଙ୍କୁ ବିଦ୍ୟାଳୟକୁ ପଠାଇବା ନିମନ୍ତେ ଚୂକ୍ତିପତ୍ର ଲେଖାଇ ନେଲେ । ଚୈତନ୍ୟ ଗଙ୍ଗାଧରଙ୍କୁ ବିଦ୍ୟାଳୟକୁ ପଠାଇବାପାଇଁ ଅନିଚ୍ଛୁକ ହେବାର ପ୍ରଧାନ କାରଣ ଏହି ଯେ, ସେତେବେଳକୁ ଗଙ୍ଗାଧରଙ୍କର ବୟସ ପ୍ରାପ୍ତ ୧୩ ବର୍ଷ ଓ ସେ ଲୁଗାବୁଣା କାର୍ଯ୍ୟରେ ପିତାଙ୍କୁ ସାହାଯ୍ୟ କରୁଥିଲେ । ଚୈତନ୍ୟ ଅନିଚ୍ଛାସତ୍ତ୍ୱେ ଗଙ୍ଗାଧରଙ୍କୁ ବରପାଲିର ବ୍ରାଞ୍ଚ ସ୍କୁଲକୁ ପଠାଇଲେ । ସେଠାରେ ବର୍ଣ୍ଣପରିଚୟ, ପଣିକିଆ ଓ ସାମାନ୍ୟ ଗଣିତ ଶିଖି ଗଙ୍ଗାଧର ଛଅମାସ ପରେ ଦ୍ୱିତୀୟ ଶ୍ରେଣୀକୁ ଉନ୍ନୀତ ହେଲେ । ଦ୍ୱିତୀୟଠାରୁ ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ଶିକ୍ଷା ଦେବାପାଇଁ ଗ୍ରାମର ଏକ ପ୍ରାନ୍ତରେ ଅନ୍ୟ ଗୋଟିଏ ଗୃହ ଥିଲା । ଗଙ୍ଗାଧର ବ୍ରାଞ୍ଚ ସ୍କୁଲର ପଢ଼ା ଶେଷ କରି ଏହି ସ୍କୁଲରେ ପଢ଼ିଲେ ଓ ପ୍ରତି ଛଅ ମାସରେ ଗୋଟିଏ ଗୋଟିଏ ଶ୍ରେଣୀ ଉତ୍ତୀର୍ଣ୍ଣ ହୋଇଗଲେ । ସେ ସମୟରେ ବୁଦ୍ଧିମାନ ବାଳକମାନେ ଛଅ ମାସରେ ଗୋଟିଏ ଶ୍ରେଣୀରୁ ଅନ୍ୟ ଶ୍ରେଣୀକୁ ଉନ୍ନୀତ ହୋଇ ପାରୁଥିଲେ । ଏହିପରି ଗଙ୍ଗାଧର ପଞ୍ଚମ ଶ୍ରେଣୀର ପାଠ୍ୟ ଶେଷ କଲେ ।

*

ଏଠାରେ ଅଧ୍ୟୟନ କଲାବେଳେ ଚୈତନ୍ୟଙ୍କ ଅନୁରୋଧ ରକ୍ଷା କରି ପ୍ରଧାନ ଶିକ୍ଷକ ଗଙ୍ଗାଧରଙ୍କୁ ପ୍ରତ୍ୟହ ବେଳାଏ ବିଦ୍ୟାଳୟରୁ ଅବ୍ୟାହତି ଦେଉଥିଲେ । ଏହି ବେଳାଟି ସେ ପିତାଙ୍କୁ ଲୁଗାବୁଣାରେ ସାହାଯ୍ୟ କରୁଥିଲେ । ସନ୍ଧ୍ୟା ସମୟରେ ସେ ଶିକ୍ଷକଙ୍କ ନିକଟକୁ ଯାଇ ପଢ଼ା ଠିକ୍ କରି ନେଉଥିଲେ । ଅଧ୍ୟବସାୟୀ ଥିବାରୁ ଗଙ୍ଗାଧର ଅଳ୍ପକାଳ ମଧ୍ୟରେ ପଞ୍ଚମ ଶ୍ରେଣୀର ପାଠ୍ୟ ଶେଷ କରିବାକୁ ସମର୍ଥ ହୋଇଥିଲେ । ନର୍ମାଲ ପରୀକ୍ଷା ଦେବା ନିମନ୍ତେ ଗଙ୍ଗାଧର ନିର୍ବାଚିତ ହୋଇଥିଲେହେଁ ସେ ଉକ୍ତ ପରୀକ୍ଷା

ଦେଇ ପାରି ନ ଥିଲେ । ସେତେବେଳେ ନର୍ମାଲ ପରୀକ୍ଷା ସମ୍ବଲପୁରରେ ହେଉଥିଲା । ବିଶେଷତଃ ପରୀକ୍ଷା ବର୍ଷା ଋତୁରେ ହେଉଥିବାରୁ ବରପାଲିଠାରୁ ସମ୍ବଲପୁର ଯିବା କଷ୍ଟକର ବ୍ୟାପାର ଥିଲା । ଫଳତଃ ଗଙ୍ଗାଧରଙ୍କ ଭାଗ୍ୟରେ ନର୍ମାଲ ପରୀକ୍ଷା ସାର୍ଟିଫିକେଟ ପାଇବା ଘଟିଲା ନାହିଁ ।

ବରପାଲି ବିଦ୍ୟାଳୟର ସେକାଳର ଶିକ୍ଷକ ଘନଶ୍ୟାମ ମିଶ୍ର ଜଣେ ସଂସ୍କୃତଜ୍ଞ ପଣ୍ଡିତ ଥିଲେ । ନିଜର ବିଦ୍ବତ୍ତା ଓ ଛାତ୍ରମାନଙ୍କ ପ୍ରତି ପୁତ୍ରବତ୍ ବ୍ୟବହାର ଦ୍ୱାରା ସେ ସେମାନଙ୍କର ଭକ୍ତିଭାଜନ ହୋଇ ପାରିଥିଲେ । ଅଳ୍ପକାଳ ମଧ୍ୟରେ ଗଙ୍ଗାଧରଙ୍କ ପ୍ରତିଭା ତାଙ୍କର ଦୃଷ୍ଟି ଆକର୍ଷଣ କଲା ଓ ଅନ୍ୟ ଦୁଇଜଣ ଛାତ୍ରଙ୍କ ସହିତ ସେ ଗଙ୍ଗାଧରଙ୍କୁ ସଂସ୍କୃତ ବ୍ୟାକରଣ ଶିକ୍ଷା ଦେଲେ ।

ଦାରିଦ୍ର୍ୟବଶତଃ ଗଙ୍ଗାଧର ପୁସ୍ତକ କ୍ରୟ କରିବାକୁ ଅସମର୍ଥ ଥିଲେ । ତେଣୁ ସେ ସହାଧ୍ୟାୟୀମାନଙ୍କଠାରୁ ପୁସ୍ତକ ମାଗିଆଣି ଅଧ୍ୟୟନ କରୁଥିଲେ । ବିଦ୍ୟାଳୟ ଛାଡ଼ିବା ପରେ ମଧ୍ୟ ସେ ପଢ଼ିବା ଅଭ୍ୟାସ ଛାଡ଼ି ନ ଥିଲେ । କାହାରିଠାରେ ଖଣ୍ଡିଏ ନୂଆ ବହି ଦେଖିଲେ ତାକୁ ମାଗିଆଣି ପଢ଼ୁଥିଲେ । ସୁବିଧା ହେଲେ ନିଜ ପଇସାରୁ ଖଣ୍ଡେ ଦୁଇ ଖଣ୍ଡ ବହି ମଧ୍ୟ କିଣି ପକାଉଥିଲେ ।

ପିତାଙ୍କଠାରୁ ଶିକ୍ଷା ପାଇ ଗଙ୍ଗାଧର ଲୁଗାବୁଣାରେ କୃତିତ୍ୱ ଲାଭ କଲେ । ତାଙ୍କ ହାତବୁଣା ଲୁଗା ସୁନ୍ଦର ଓ ମଜଭୁତ ହେଉଥିଲା । ତେଣୁ ତାଙ୍କ ଲୁଗା ପ୍ରତି ଗ୍ରାହକମାନଙ୍କର ବେଶ୍ ଆଗ୍ରହ ଥିଲା । ଲୁଗାବୁଣା ଛଡ଼ା ତାଙ୍କର ଆଉ ଗୋଟିଏ ଆୟର ପନ୍ଥା ଥିଲା । ସେ ପଟା, ତମସୁକ ପ୍ରଭୃତି ଲେଖି ଦେଇ ସେଥିରୁ ମଧ୍ୟ କିଛି ରୋଜଗାର କରୁଥିଲେ ।

ଘନଶ୍ୟାମ ମିଶ୍ରଙ୍କ ପରେ ବନମାଳୀ ଅଗ୍ରୱାଳ ବରପାଲି ସ୍କୁଲର ଶିକ୍ଷକ ହୋଇ ଆସିଲେ । ସେ ମଧ୍ୟ ଅଳ୍ପ ଦିନ ପରେ ଚାଲି ଯିବାରୁ ଲକ୍ଷ୍ମଣ ମିଶ୍ର ନାମକ ଅନ୍ୟ ଜଣେ ପଣ୍ଡିତ ତାଙ୍କ ସ୍ଥାନରେ ଆସିଲେ । ଲକ୍ଷ୍ମଣ ମିଶ୍ରଙ୍କ ପ୍ରେରଣାରେ ଗଙ୍ଗାଧର ୧୮୮୨ ଖ୍ରୀଷ୍ଟାବ୍ଦରେ ଗ୍ରାମ୍ୟ ସ୍କୁଲର (Village school) ପରୀକ୍ଷା ଦେଇଥିଲେ; କିନ୍ତୁ ଏହି ପରୀକ୍ଷାରେ ଗଣିତରେ ଯଥେଷ୍ଟ ନମ୍ବର ନ ରଖିବାରୁ ଦେଶୀୟ ପାଠଶାଳା ସାର୍ଟିଫିକେଟ୍ ପାଇଥିଲେ । ଗଙ୍ଗାଧର ଲୁଗାବୁଣାକୁ ପ୍ରଧାନ ବ୍ୟବସାୟ ରୂପେ ଅବଲମ୍ବନ କରିଥିଲେ, କିନ୍ତୁ ଉନ୍ନତର ଚର୍ଚ୍ଚା କରିବାକୁ ଯାଇ ଗ୍ରନ୍ଥର ଚର୍ଚ୍ଚା ଏକାବେଳକେ ଛାଡ଼ି ଦେଇ ନ ଥିଲେ । ତନ୍ତ କାର୍ଯ୍ୟରୁ ଟିକିଏ ଅବସର ପାଇଲେ ସେ ପଣ୍ଡିତଙ୍କ ନିକଟକୁ ଯାଇ ସଂସ୍କୃତ ବ୍ୟାକରଣ ଓ କାବ୍ୟ ପ୍ରଭୃତି ଶିକ୍ଷା କରୁଥିଲେ ଓ ତା ସଙ୍ଗେ ସଙ୍ଗେ ବିଦଗ୍ଧ ଚିନ୍ତାମଣି, ବୈଦେହୀଶ ବିଳାସ ଓ ରସକଲ୍ଲୋଳ ପ୍ରଭୃତି ପ୍ରାଚୀନ କାବ୍ୟ ପାଠ କରି ସେ ଗୁଡ଼ିକରୁ ରସ ଗ୍ରହଣ କରୁଥିଲେ ।

## —କର୍ମଜୀବନ—

ପ୍ରାୟ ଦଶ ବର୍ଷ ବୟସରେ ଗଙ୍ଗାଧରଙ୍କର ବିବାହ ହୋଇଥିଲା । ୧୭ ବର୍ଷ ବେଳକୁ ତାଙ୍କର ସ୍ତ୍ରୀ ଗୃହରେ ପଦାର୍ପଣ କଲେ । ଏହି ସମୟଠାରୁ ପରିବାର ପୋଷଣର ଅଧିକାଂଶ ଭାର ତାଙ୍କ ଉପରେ ପଡ଼ିଥିଲା । ଲୁଗାବୁଣା ଏବଂ ତମସୁକ ଆଦି ଲେଖିବା ତାହାଙ୍କର ଆୟର ପ୍ରଧାନ ଉପାୟ ଥିଲା । ସୌଭାଗ୍ୟ-ବଶତଃ ବରପାଲିର ଜମିଦାର ରାୟବାହାଦୁର ଲାଲ ନୃପରାଜ ସିଂହ ଦେବ ଗଙ୍ଗାଧରଙ୍କର ଯୋଗ୍ୟତା ଜାଣିପାରି ତାଙ୍କୁ ନିଜ ଜମିଦାରୀ ସିରସ୍ତାରେ ଅମିନରୂପେ ନିଯୁକ୍ତ କଲେ । ସେତେବେଳେ

ତାଙ୍କର ବେତନ ଥିଲା ସାତଟଙ୍କା ମାତ୍ର । ଏହି ସ୍ୱଳ୍ପ ବେତନ ପାଇ ମଧ୍ୟ ସେ ନିଜର ସାଧୁତା ଦ୍ୱାରା ସମସ୍ତଙ୍କୁ ମୁଗ୍ଧ କରି ପାରିଥିଲେ ଓ ବିଶ୍ୱସ୍ତ କର୍ମଚାରୀ ରୂପେ ପରିଚିତ ହୋଇଥିଲେ ।

ନୃପରାଜ ସିଂହ ଗଙ୍ଗାଧରଙ୍କର ଜ୍ଞାନ ଓ ଚରିତ୍ରର ଯଥେଷ୍ଟ ପରିଚୟ ପାଇଥିଲେ ଏବଂ ତାଙ୍କ ଦ୍ୱାରା ଅନେକ ପ୍ରକାରେ ଉପକୃତ ହୋଇଥିଲେ । ସେ ଗଙ୍ଗାଧରଙ୍କୁ ଅମୀନ ପଦରୁ ମୋହରିର ପଦକୁ ଉନ୍ନୀତ କଲେ । ତାଙ୍କର ମାସିକ ବେତନ ମଧ୍ୟ ବୃଦ୍ଧି କରାଯାଇ ୧୫ ଟଙ୍କା ହେଲା । ଜମିଦାର ଗଙ୍ଗାଧରଙ୍କୁ ଅତ୍ୟନ୍ତ ବିଶ୍ୱାସ କରୁ-ଥିବାରୁ କ୍ରମେ ମୋହରିର କାର୍ଯ୍ୟ ଛଡ଼ା ଅନ୍ୟାନ୍ୟ କେତେକ କାର୍ଯ୍ୟର ହିସାବ ରଖିବାର ଭାର ମଧ୍ୟ ତାଙ୍କୁ ଦେଲେ । ଏହି ସମୟରେ ନୃପରାଜ ସିଂହ ଅନରାରି ମାଜିଷ୍ଟ୍ରେଟ ଥିଲେ । ତାଙ୍କର କଚେରି ଥିଲା ବରପାଲିରେ ଓ ସେଠାରେ ତାଙ୍କର ଜଣେ ଜୁଡ଼ିସିଆଲ ମୋହରିର ଥିଲେ । ୧୮୯୯ ଖ୍ରୀଷ୍ଟାବ୍ଦରେ ସେ ସମୟର ଜୁଡ଼ିସିଆଲ ମୋହରିର ବସନ୍ତ ରୋଗରେ ହଠାତ୍ ମରିଯିବାରୁ ନୃପରାଜ ସିଂହଙ୍କ ସୁପାରିସରେ ଗଙ୍ଗାଧର ସେହି କାର୍ଯ୍ୟରେ ନିଯୁକ୍ତ ହେଲେ । ଏହି କାର୍ଯ୍ୟ ପାଇଁ ସେ ନିଜର ଦରମା ୧୫ ଟଙ୍କା ଛଡ଼ା ଅଧିକ ୧୫ ଟଙ୍କା ସରକାରଙ୍କଠାରୁ ପାଇଲେ । ଫଳରେ ଗଙ୍ଗାଧରଙ୍କୁ ଦୁଇଜଣଙ୍କର କାର୍ଯ୍ୟ କରିବାକୁ ପଡ଼ିଲା । ତାଙ୍କୁ ସକାଳବେଳାଟି ଜମିଦାରଙ୍କ କଚେରିରେ ମୋହରିର କାମ ଓ ଉପରବେଳା ଅନରାରି ମାଜିଷ୍ଟ୍ରେଟଙ୍କ କଚେରିରେ କିରାଣି କାମ କରିବାକୁ ହେଉଥିଲା ।

ଜମିଦାର ମହାଶୟ ଗଙ୍ଗାଧରଙ୍କ ଉପରେ ବିଶେଷ ସନ୍ତୁଷ୍ଟ ଥିଲେ ଏବଂ ତାଙ୍କର ଆର୍ଥିକ ଅସୁବିଧା ଦୂର କରିବା ପାଇଁ ତାଙ୍କୁ

୧୨ ଏକର ଜମି ପଟ୍ଟା ଦେଇଥିଲେ । ଏହି ଜମି ସକାଶେ ଗଙ୍ଗାଧରଙ୍କୁ କେବଳ ୧୫୦ ଟଙ୍କା ସଲାମି ଦେବାକୁ ହୋଇଥିଲା । ଏଥି ମଧ୍ୟରେ ତାଙ୍କର ଗୁଡ଼ିଏ ସନ୍ତାନ ଜନ୍ମିଥିଲେ । ସାମାନ୍ୟ ଆୟରେ ସମସ୍ତ ପରିବାରଟିକୁ ଚଳାଇବା ତାଙ୍କ ପକ୍ଷରେ କଠିନ ଥିଲା । ସେ ବରପାଲିରେ ପ୍ରାୟ ୩ ବର୍ଷ କାର୍ଯ୍ୟ କରିଥିଲେ । ଏହିଠାରେ ଥିବା ସମୟରେ ଗଙ୍ଗାଧର ଥରେ ବଡ଼ ଅସୁବିଧାରେ ପଡ଼ିଥିଲେ ।

ନୃପରାଜ ସିଂହ ରାଜପରିବାରର ଲୋକ । ସମ୍ବଲପୁର, ବାମଣ୍ଡା, ମୟୂରଭଞ୍ଜ ରାଜପରିବାର ସହିତ ତାଙ୍କର ସମ୍ବନ୍ଧ । କିନ୍ତୁ ଇଂରେଜଙ୍କ ଅମଳରେ ତାଙ୍କର ପ୍ରଭାବ ଓ ପ୍ରତିପତ୍ତି ଯଥେଷ୍ଟ କମିଯାଇଥିଲା । ଏହି ସମୟରେ ବ୍ରହ୍ମପୁରର କପିଳେଶ୍ୱର ପଣ୍ଡା ଓ ବ୍ରଜବାସୀ ପଣ୍ଡା ନାମରେ ଦୁଇ ଭାଇ ବରପାଲିକୁ ଆସି ବ୍ୟବସାୟ ଆରମ୍ଭ କରିଥିଲେ । ସାମାନ୍ୟ କେତେ ବର୍ଷ ମଧ୍ୟରେ ସେମାନେ ଯଥେଷ୍ଟ ଧନ ଉପାର୍ଜନ କରି ବଳୀୟାନ ହୋଇଗଲେ । ଲୋକେ କ୍ରମେ ଜମିଦାରଙ୍କୁ ନ ମାନି ଏହି ପଣ୍ଡାମାନଙ୍କ ଆଡ଼କୁ ଢଳିଲେ । ଫଳରେ ପଣ୍ଡା ଓ ଜମିଦାରଙ୍କ ମଧ୍ୟରେ ମକଦ୍ଦମାର ସୂତ୍ରପାତ ହେଲା । ଗ୍ରାମବାସୀଙ୍କ ମଧ୍ୟରେ ଦୁଇଦଳର ସୃଷ୍ଟି ହେଲା ଓ ପ୍ରତ୍ୟେକ ଦଳ ଗୋଟିଏ ଗୋଟିଏ ପକ୍ଷକୁ ସମର୍ଥନ କଲେ । ଗଙ୍ଗାଧର ଜମିଦାରଙ୍କ ପାଖରେ ଚାକିରି କରୁଥିଲେ ମଧ୍ୟ ଏହି କଳହରେ ଆଦୌ ଜମିଦାରଙ୍କ ପକ୍ଷ ସମର୍ଥନ କରି ନ ଥିଲେ । ବରଂ ଉଭୟ ପକ୍ଷକୁ ମିଳାଇବା ପାଇଁ ପ୍ରାଣପଣେ ଚେଷ୍ଟା କରି ବିଫଳ ହୋଇଥିଲେ । ଆଶ୍ଚର୍ଯ୍ୟର କଥା ଏହି ଯେ, ଗ୍ରାମର ଦୁଇଦଳ ମଧ୍ୟରେ ଘୋର ଶତ୍ରୁତା ଥିଲେ ମଧ୍ୟ ଉଭୟ ପକ୍ଷ ଗଙ୍ଗାଧରଙ୍କୁ ବନ୍ଧୁ ବୋଲି ମନେ କରୁଥିଲେ ଏବଂ କେହି ତାଙ୍କ ପ୍ରତି ଶତ୍ରୁତା ପୋଷଣ କରି ନ ଥିଲେ ।

ଏହି ମକଦ୍ଦମା ଫଳରେ ଜମିଦାରଙ୍କର କେତେକ କର୍ମଚାରୀ କାରାଦଣ୍ଡରେ ଦଣ୍ଡିତ ହେଲେ ଓ ଜମିଦାରଙ୍କ ଅନରାରୀ ମାଜିଷ୍ଟ୍ରେଟ ପଦ ଛାଡ଼ିନିଆଗଲା । ଗଙ୍ଗାଧର ଜୁଡ଼ିସିଆଲ ମୋହରିର ଭାବରେ ସରକାରଙ୍କଠାରୁ ପାଉଥିବା ମାସିକ ପନ୍ଦର ଟଙ୍କା ବେତନରୁ ବଞ୍ଚିତ ହେଲେ । ଏହି ସମୟରେ ବିଜେପୁରର ଜମିଦାର ଅନରାରୀ ମାଜିଷ୍ଟ୍ରେଟ ପଦରେ ନିଯୁକ୍ତ ହେବାରୁ ଗଙ୍ଗାଧର ତାଙ୍କର ମୋହରିର ଭାବରେ ନିଯୁକ୍ତ ହୋଇ ବିଜେପୁରକୁ ଗଲେ ।

ଏଥିମଧ୍ୟରେ ଗଙ୍ଗାଧରଙ୍କ ପାରିବାରିକ ଜୀବନରେ ଆଉ ଗୋଟିଏ ଘଟଣା ଘଟି ଯାଇଥିଲା । ତାଙ୍କର ସ୍ତ୍ରୀ ଦୁଇଟି ସନ୍ତାନଙ୍କୁ ଛାଡ଼ି ସ୍ୱର୍ଗାରୋହଣ କଲେ । ପିଲାମାନଙ୍କର ତତ୍ତ୍ୱ ନେବାକୁ କେହି ନ ଥିଲେ । ତେଣୁ ବନ୍ଧୁମାନଙ୍କ ଅନୁରୋଧରେ ସେ ଦ୍ୱିତୀୟ ଥର ବିବାହ କଲେ । ନୂତନ ସ୍ତ୍ରୀ ମଧ୍ୟ ଗଙ୍ଗାଧରଙ୍କ ପ୍ରଭାବରେ ଅନେକ ସଦ୍‌ଗୁଣର ଅଧିକାରିଣୀ ହୋଇ ପାରିଥିଲେ । ସେ ସନ୍ତାନମାନଙ୍କର ଯତ୍ନ ନେଇ ସେମାନଙ୍କୁ ନିଜ ଗର୍ଭଜାତ ପୁତ୍ର କନ୍ୟା ରୂପେ ପାଳନ କରିବାକୁ ଲାଗିଲେ ।

ଗଙ୍ଗାଧରଙ୍କ ପୁତ୍ର ଦ୍ୱୟଙ୍କର ନାମ ଅର୍ଜ୍ଜୁନ ଓ ଭଗବାନ । ବୃଦ୍ଧ ଚୈତନ୍ୟ ବରପାଲିରେ ଅର୍ଜ୍ଜୁନଙ୍କର ବିବାହ ଲାଗି ଗୋଟିଏ କନ୍ୟା ସ୍ଥିର କରିଥିଲେ । ବିବାହର ସମସ୍ତ ଆୟୋଜନ ହୋଇ ସାରିଥିଲା । ଏହିପରି ସମୟରେ ହଠାତ୍ କନ୍ୟାଟିର ମୃତ୍ୟୁ ଘଟିଲା । ତେଣୁ ଚୈତନ୍ୟ ତାଙ୍କୁ ଅନ୍ୟତ୍ର ବିବାହ ଦେଲେ । ପ୍ରଥମ ନିର୍ବାଚିତା କନ୍ୟାର ପିତାମାତା ଏହି କନ୍ୟାଟିକୁ ନିଜର ଧର୍ମଝିଅ ରୂପେ ଗ୍ରହଣ କରି ଅର୍ଜ୍ଜୁନଙ୍କ ହସ୍ତରେ ସମର୍ପଣ କରିଥିଲେ । ବୃଦ୍ଧ ଚୈତନ୍ୟ ନାତି ଅର୍ଜ୍ଜୁନଙ୍କର ବୈବାହିକ ଜୀବନ ବେଶି ଦିନ

ଦେଖି ପାରି ନ ଥିଲେ । ଏହି କ୍ରନ୍ଦନ ବଧୂଟି ସ୍ୱାମୀଙ୍କୁ ଅସିବାର ଅଳ୍ପ କେତେକ ଦିନ ମଧ୍ୟରେ ଚୈତନ୍ୟ ପରଲୋକ ଗମନ କଲେ ।

ଗଙ୍ଗାଧର ସସ୍ତ୍ରୀକ ବିଜେପୁରରେ ରହୁଥିଲେ ଏବଂ ଗ୍ରାମରେ ଝିଅ, କ୍ୱାଁଇ, ଅର୍ଜୁନ, ତାଙ୍କ ନବବିବାହିତା ସ୍ତ୍ରୀ ଓ ଭଗବାନ ରହୁଥିଲେ । ଦିନେ ଅର୍ଜୁନ ତାଙ୍କ ଧର୍ମ-ଶାଶୁଙ୍କ ଘରକୁ ନିମନ୍ତ୍ରିତ ହୋଇ ଯାଇଥିଲେ । ଭୋଜନାନନ୍ତର ସେ ଗ୍ରାମକୁ ଫେରି ଅସିଲେ । ସେହି ରାତିରେ ତାଙ୍କର ଭୀଷଣ ଝାଡ଼ାବାନ୍ତି ହେଲା । ଚିକିତ୍ସା ପାଇଁ କିଛି ବ୍ୟବସ୍ଥା କରିବାର ଉପାୟ ନ ଥିଲା । ଗଙ୍ଗାଧରଙ୍କ ନିକଟକୁ ରାତାରାତି ସମ୍ବାଦ ଗଲା । ସମ୍ବାଦ ପାଇବା ମାତ୍ରେ ସେ ବିଜେପୁରରୁ ପଦବ୍ରଜରେ ଅସିଲେ; ନଅ ମାଇଲ ପଥ ଅତିକ୍ରମ କରି ବରପାଲିରେ ସକାଳ ଆଠଟା ବେଳକୁ ପହଞ୍ଚିଲେ । କିନ୍ତୁ ସେତେବେଳକୁ ସବୁ ଶେଷ ହୋଇ ଯାଇଥିଲା । ଗଙ୍ଗାଧର ପୁତ୍ରର ଶବ ଉପରେ ପଡ଼ି ବିକଳରେ ଲୁହ ଢାଳିଲେ । ମାତ୍ର ପୁତ୍ରର ମହାନିଦ୍ରା ଆଉ ଭାଙ୍ଗିଲା ନାହିଁ ।

ଏହି ଜ୍ୟେଷ୍ଠ ପୁତ୍ରର ବିୟୋଗରେ ଗଙ୍ଗାଧରଙ୍କ ପ୍ରାଣରେ ଦାରୁଣ ଅଘାତ ଉପସ୍ଥିତ ହେଲା । ସେ ପୁତ୍ର ଶୋକରେ ଘାରି ହୋଇ କେତେକ ଦିନ ଛୁଟି ନେଲେ; ମାତ୍ର ଘରେ ରହିବା ଦ୍ୱାରା ତାଙ୍କ ଶୋକର ଉପଶମ ନ ହୋଇ ବରଂ ବୃଦ୍ଧି ଘଟିଲା । ତେଣୁ ସେ ଛୁଟି ଶେଷରେ ବିଜେପୁର ଫେରି ଯାଇ କାର୍ଯ୍ୟରେ ପୁନର୍ବାର ଯୋଗ ଦେଲେ । ଅଳ୍ପ ଦିନ ପରେ ତାଙ୍କର ସମ୍ବଲପୁର ପରିବର୍ତ୍ତନ ହେଲା । ସମ୍ବଲପୁରରେ ଅବସ୍ଥାନ କରୁଥିବା ସମୟରେ ସେ କେତେକ କାବ୍ୟ କବିତା ଲେଖି ମନରେ ଶାନ୍ତି ପାଇବାର ଚେଷ୍ଟା କରିଥିଲେ ।

ବରପାଲିର ତତ୍‌କାଳୀନ ଜମିଦାର ସୂର୍ଯ୍ୟୋଦୟ ସିଂହଙ୍କ ସାଦର ଅନୁରୋଧରେ ଗଙ୍ଗାଧର ଛୁଟି ଅଣି ବରପାଲିରେ ରହିଲେ ଓ ତାଙ୍କର ଜମିଦାରୀ କାର୍ଯ୍ୟ ବୁଝିଲେ । କିନ୍ତୁ ଏହି କାର୍ଯ୍ୟରେ ତାଙ୍କ ମନରେ ସନ୍ତୋଷ ଆସିଲା ନାହିଁ । ତେଣୁ ସେ ଛୁଟି ଶେଷରେ ପୁଣି ବିଜେପୁରରେ ନିଜ ସ୍ଥାୟୀ କର୍ମରେ ଯୋଗଦେଲେ । କ୍ରମେ ଏହି ବିଜେପୁରର ଜମିଦାରଙ୍କ ସହିତ ଗଙ୍ଗାଧରଙ୍କର ଅନ୍ତରଙ୍ଗତା ବୃଦ୍ଧି ପାଇଲା । ଜମିଦାର ମହାଶୟ ତାଙ୍କର କବିତ୍ୱ ଓ ଚରିତ୍ରବତ୍ତାରେ ମୁଗ୍ଧ ହୋଇ ଯାଇଥିଲେ । ତେଣୁ ସେ ତାଙ୍କୁ ସାମାନ୍ୟ ମୋହରିର ଭାବରେ ବିଚାର ନ କରି ଅନ୍ତରଙ୍ଗ ବନ୍ଧୁ ରୂପେ ବ୍ୟବହାର କରୁଥିଲେ ।

ବୋଡ଼ାସମ୍ବରର ଜମିଦାର ରାଜାସାହେବ ଲାଲ ରାଜେନ୍ଦ୍ର ସିଂହ ବରିହା ଅନରାରୀ ମାଜିଷ୍ଟ୍ରେଟ ଥିଲେ । ଗଙ୍ଗାଧର ତାଙ୍କ ଅଧୀନରେ କାର୍ଯ୍ୟ କରିବାକୁ ପଦ୍ମପୁର ବଦଳି ହେଲେ । ଲାଲ ରାଜେନ୍ଦ୍ର ସିଂହ ଜଣେ ଉଦାରମନା ଓ ଗୁଣଗ୍ରାହୀ ବ୍ୟକ୍ତି ଥିଲେ । ଅଳ୍ପଦିନ ମଧ୍ୟରେ ସେ ଗଙ୍ଗାଧରଙ୍କର ପ୍ରଗାଢ଼ ପାଣ୍ଡିତ୍ୟ, ଅଧିକ କବିପ୍ରତିଭା ଓ ସାଧୁତାର ପରିଚୟ ପାଇ ତାଙ୍କୁ ଆଦର ଓ ସମ୍ମାନ ପ୍ରଦର୍ଶନ କରିବାକୁ ଲାଗିଲେ । ସେତେବେଳେ ଭୁବନେଶ୍ୱର ବହିଦାର ନାମକ ଜଣେ ଲୋକ ଜମିଦାରଙ୍କର ଦେବାନ ଥିଲେ । ସେ ଗଙ୍ଗାଧରଙ୍କ ପ୍ରତିପତ୍ତି ଓ ଜମିଦାରଙ୍କର ତାଙ୍କ ପ୍ରତି ଆଦର-ପୂର୍ଣ୍ଣ ବ୍ୟବହାର ଦେଖି ଈର୍ଷାନ୍ୱିତ ହେଲେ । କେତେକ ବିଶିଷ୍ଟ ଲୋକଙ୍କ ଅନୁରୋଧରେ ଜମିଦାର ମହୋଦୟ ଗଙ୍ଗାଧରଙ୍କର 'ପ୍ରଣୟ ବଲ୍ଲରୀ' କାବ୍ୟଟି ଛପାଇବାର ବ୍ୟୟ ବହନ କରିବାକୁ ସ୍ୱୀକୃତ ଥିଲେ; କିନ୍ତୁ ବହିଦାର ମହାଶୟ ଏହାର ବିରୋଧ କଲେ । ଜମିଦାର ଏହି ଦେବାନଙ୍କର ନୀଚତା ଓ ଅସାଧୁତା ଲାଗି ତାଙ୍କ

କାର୍ଯ୍ୟରେ ଅସନ୍ତୁଷ୍ଟ ଥିଲେ ଓ ଶେଷରେ ତାଙ୍କୁ କାର୍ଯ୍ୟରୁ ଅନ୍ତର କରି ଦେଇଥିଲେ । କିନ୍ତୁ ସେ ବିଦାୟ ନେବା ପୂର୍ବରୁ ନିଜର କାର୍ଯ୍ୟ ଲାଗି ଅନୁତପ୍ତ ହୋଇ ଗଙ୍ଗାଧରଙ୍କ ନିକଟରେ କ୍ଷମାଭିକ୍ଷା କରିଥିଲେ ଏବଂ ପ୍ରଣୟୀବଲ୍ଲଭୀର ଛାପାଖରଚ ଜମିଦାରୀ ଅଫିସରୁ ଦିଆଯିବାର ବ୍ୟବସ୍ଥା କରି ଯାଇଥିଲେ ।

ପଦ୍ମପୁରରେ କାର୍ଯ୍ୟ କରୁଥିବା ସମୟରେ ତାଙ୍କର ମାସିକ ବେତନ ଥିଲା ୩୫ ଟଙ୍କା । ଏହି ସମୟରେ ସେ ଥରେ ଜମିଦାରୀର ସୀମା ନିର୍ଦ୍ଧାରଣ ସମ୍ପର୍କରେ ଗୋଟିଏ ଅସ୍ୱାସ୍ଥ୍ୟକର ସ୍ଥାନକୁ ଯାଇଥିଲେ । ସେଠାରେ ତାଙ୍କୁ ଜ୍ୱର ଆକ୍ରମଣ କଲା । ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଏହି ରୋଗ ତାଙ୍କୁ ତ୍ୟାଗ କରି ନ ଥିଲା ।

୧୯୧୭ ମସିହାରେ ଗଙ୍ଗାଧର ମାସିକ ୧୧ ଟଙ୍କା ପେନ୍‌ସନ୍ ରୂପେ ପାଇ ସରକାରୀ ଚାକିରିରୁ ଅବସର ଗ୍ରହଣ କଲେ । ତତ୍ପରେ ସେ ପଦ୍ମପୁର ଜମିଦାରଙ୍କ ଅଧୀନରେ ଅଣ୍ଟର ଭାବରେ ଦୁଇବର୍ଷ କାର୍ଯ୍ୟ କରିଥିଲେ ଓ ଏଥିଲାଗି ମାସିକ ୧୫ ଟଙ୍କା ବେତନ ପାଉଥିଲେ ।

ବୋଡ଼ାସମ୍ବରର ବୟୋବୃଦ୍ଧ ରାଜା କେବଳ ପ୍ରଣୟୀ-ବଲ୍ଲଭୀର ମୁଦ୍ରଣବ୍ୟୟ ବହନ କରି ସନ୍ତୁଷ୍ଟ ନ ଥିଲେ । ସେ କବିଙ୍କୁ ଢେଣ୍ଟାପଦର ନାମକ ଗୋଟିଏ ଗ୍ରାମ ପୁରୁଷାନୁକ୍ରମେ ଭୋଗ କରିବାକୁ ଦେଇଥିଲେ ଏବଂ କବିଙ୍କର ସମ୍ମାନ ଉଦ୍ଦେଶ୍ୟରେ 'କବିବରପୁର' ନାମରେ ଗୋଟିଏ ଗ୍ରାମ ବସାଇଥିଲେ । ଅବସର ଗ୍ରହଣ କରି ଗଙ୍ଗାଧର ଜମିଦାରଙ୍କ ଅନୁଗ୍ରହରୁ ପାଇଥିବା

ଅବାବାଧୀ ଜମିକୁ ଅବାଦ କରିବା ପାଇଁ ଚେଷ୍ଟା କରିଥିଲେ; କିନ୍ତୁ ଏଥିରେ ଅର୍ଥବ୍ୟୟହିଁ ସାର ହେଲା । କେତେକ ଦିନ ପରେ ବୟୋବୃଦ୍ଧ ରୋଗଜୀର୍ଣ୍ଣ ଗଙ୍ଗାଧର ଜନ୍ମଭୂମି ବରପାଲିକୁ ଫେରି ଆସିଲେ ।

ବରପାଲିର ଜମିଦାର ସୂର୍ଯ୍ୟୋଦୟ ସିଂହଙ୍କ ଅନୁରୋଧରେ ସେ ତାଙ୍କର ମାଲମୋହରରର କାର୍ଯ୍ୟ ଗ୍ରହଣ କଲେ । କିନ୍ତୁ କେତେକ କାଳ ପରେ ସେ ସତ୍ୟ ଓ ନ୍ୟାୟର ମର୍ଯ୍ୟାଦା ରକ୍ଷା କରିବା ପାଇଁ ଏହି ପଦ ତ୍ୟାଗ କରିଥିଲେ । ମାଲମୋହରରର ପଦ ତ୍ୟାଗ କରିବା ପରେ କବିବର ଆଉ ଦୁଇ ବର୍ଷ ମାତ୍ର ବଞ୍ଚିଥିଲେ । ଏହି ଦୁଇବର୍ଷ ସେ ଘୋର ଅଭାବ ଓ ଅସୁବିଧା ମଧ୍ୟରେ କଟାଇ ଥିଲେ; କିନ୍ତୁ ସେଥିଲାଗି ସେ ଆତ୍ମସମ୍ମାନକୁ ବଳି ଦେଇ ସତ୍ୟ ଓ ନ୍ୟାୟର ପଥ ତ୍ୟାଗ କରିବାକୁ ପ୍ରସ୍ତୁତ ନ ଥିଲେ ।

କବିଙ୍କର ଅନ୍ତିମ ପ୍ରୟାଣର ଅଳ୍ପଦିନ ପୂର୍ବରୁ ପାଟଣା, ସୋନପୁର, ବଉଦ, ସମ୍ବଲପୁର ପ୍ରଭୃତି ଅଞ୍ଚଳର ଭୁଲିଆମାନେ ବରପାଲିଠାରେ ଗୋଟିଏ ବିରାଟ ଜାତିଆଣି ସଭା ବସାଇଥିଲେ । ନିଜ ଜାତିର ଗୌରବ-ରବି ଗଙ୍ଗାଧରଙ୍କୁ ସମ୍ମାନ ଦେଖାଇବା ଏହି ସଭାର ପ୍ରଧାନ ଉଦ୍ଦେଶ୍ୟ ଥିଲା । ସେତେବେଳକୁ ଗଙ୍ଗାଧର ଜରାଜୀର୍ଣ୍ଣ, ରୋଗକ୍ଲିଷ୍ଟ ଓ ଉତ୍‌ଥାନ-ଶକ୍ତି-ରହିତ । କବିଙ୍କୁ ଚୌକିରେ ବସାଇ ସଭାସ୍ଥଳକୁ ଅଣାଗଲା; ସମାଗତ ଜନତା କବିଙ୍କର ଦର୍ଶନ ଲାଭ କରି ନିଜକୁ ଧନ୍ୟ ମନେ କଲେ ।

୧୯୨୪ ମସିହା ଅପ୍ରେଲ ୪ ତାରିଖ ଚୈତ୍ର ମାସ ଅମାବାସ୍ୟା ତିଥିରେ ଗଙ୍ଗାଧର ସମଗ୍ର ଉତ୍କଳକୁ ଅନ୍ଧକାର କରିଦେଇ ଦିବ୍ୟଧାମକୁ ପ୍ରସ୍ଥାନ କଲେ ।

ଦିନେ ଶ୍ରାବଣ ପୂର୍ଣ୍ଣିମା ରାତିରେ ଗଙ୍ଗାଧର ଓଡ଼ିଶାରେ ଭୂମିଷ୍ଠ ହୋଇଥିଲେ । ସେ ଦିନ କେବଳ ତାଙ୍କର ପିତାମାତା ଓ ପିତାମହ ପ୍ରଭୃତି ଅଳ୍ପ କେତେ ଜଣ ତାଙ୍କ ଜନ୍ମରେ ଆନନ୍ଦ ପ୍ରକାଶ କରିଥିଲେ । କିନ୍ତୁ ୭୨ ବର୍ଷପରେ ଚୈତ୍ର ଅମାବାସ୍ୟାରେ ଯେତେବେଳେ ସେ ଇହଧାମ ତ୍ୟାଗ କରିଗଲେ୍ ସେତେବେଳେ ସମଗ୍ର ଉତ୍କଳର କୋଟି ସଂଖ୍ୟକ ନରନାରୀଙ୍କର ଚକ୍ଷୁରୁ ଲୋତକ ଧାର୍ ବହି ଯାଇଥିଲା ।

## —ଚରିତ୍ର—

ଗଙ୍ଗାଧର ଉଚ୍ଚକୁଳରେ ବା ଧନୀ ପରିବାରରେ ଜନ୍ମଗ୍ରହଣ କରି ନ ଥିଲେ । ସେ ଉଚ୍ଚବେତନ ଭୋଗୀ ରାଜକର୍ମଚାରୀ ନ ଥିଲେ କିମ୍ବା ସରକାରଙ୍କଠାରୁ କୌଣସି ପଦବୀ ପାଇ ନ ଥିଲେ । ଦୁଃଖ ଦାରିଦ୍ର୍ୟ ତାଙ୍କ ଜୀବନର ଚିରସହଚର ଥିଲା । ତଥାପି ସେ ଦେଢ଼କୋଟି ଓଡ଼ିଆଙ୍କର ନମସ୍ୟ । ସେ କେବଳ ସମ୍ବଲପୁରର ନୁହନ୍ତି, କିମ୍ବା କେବଳ ଭୁଲିଆ ଜାତିର ନୁହନ୍ତି; ସେ ସମଗ୍ର ଓଡ଼ିଶା ଦେଶର ଓ ସମଗ୍ର ଓଡ଼ିଆ ଜାତିର ଗୌରବ । ତାଙ୍କର ଚରିତ୍ରବତ୍ତା ଓ କବିତ୍ୱ ତାଙ୍କୁ ଏହି ଉଚ୍ଚ ଆସନର ଅଧିକାରୀ କରିଅଛି ।

ତାଙ୍କର ଚରିତ୍ର ଅତି ମହତ୍ ଥିଲା । ସେ ଯେଉଁ କାର୍ଯ୍ୟ କରୁଥିଲେ ତାକୁ ସୁଚାରୁ ରୂପେ ସମ୍ପାଦନ କରୁଥିଲେ ଏବଂ ଲୋଭ ମୋହଠାରୁ ନିଜକୁ ଦୂରରେ ରଖିପାରିଥିଲେ । ଅନାୟାସ ମାଜିଷ୍ଟ୍ରେଟଙ୍କ ଜୁଡ଼ିସିଆଲ୍ ମୋହରର ଭାବରେ ସେ ଅନ୍ୟାୟ ଉପାୟ ଅବଲମ୍ବନ କରି ଯଥେଷ୍ଟ ଅର୍ଥ ଉପାର୍ଜନ କରିପାରିଥାନ୍ତେ; କିନ୍ତୁ ଜଗତର କେ

କୌଣସି ପ୍ରଲୋଭନଠାରୁ ସେ ଦୂରରେ ରହୁଥିଲେ । 'ନ୍ୟାଯ୍ୟାତ୍ ପଥଃ ପ୍ରବିଚଳନ୍ତି ପଦଂ ନ ଧୀରାଃ' ଏହି ଉକ୍ତିଟି ତାଙ୍କ ଜୀବନରେ ପ୍ରମାଣିତ ହୋଇଥିଲା । ଯାହା ଘଟୁ ନା କାହିଁକି, ପ୍ରାଣ ଯାଉ ଅବା ରହୁ ନ୍ୟାଯ୍ୟ ପଥରୁ ଲବମାତ୍ର ବିଚଳିତ ନ ହେବା ତାଙ୍କର ନୀତି ଥିଲା । ଯେତେବେଳେ ତାଙ୍କର ଅନ୍ନଦାତା ଜମିଦାର ଶତ୍ରୁମାନଙ୍କ ସହିତ କଳହରେ ଲିପ୍ତ, ସେତେବେଳେ ମଧ୍ୟ ସେ ନିଜକୁ ସମ୍ପୂର୍ଣ୍ଣ ରୂପେ ନିରପେକ୍ଷ ରଖି ଉଭୟ ପକ୍ଷର ବିଶ୍ୱାସଭାଜନ ହୋଇ ପାରିଥିଲେ । ଜୀବନର ଶେଷ ପାଦରେ ସେ ବରପାଲିର ତତ୍କାଳୀନ ଜମିଦାର ସୂର୍ଯ୍ୟୋଦୟ ସିଂହଙ୍କ ଅଧୀନରେ କାର୍ଯ୍ୟ କରୁଥିଲେ; କିନ୍ତୁ ଜମିଦାରଙ୍କର କାର୍ଯ୍ୟକଳାପ ସହିତ ଏକମତ ନ ହୋଇ ସେ ପଦତ୍ୟାଗ ପୂର୍ବକ ଉପବାସ, ଅଭାବକୁ ବରଣ କରି ନେଇଥିଲେ; ଅନ୍ୟାୟର ଦାସତ୍ୱ ଗ୍ରହଣ କରି ସୁଖମୟ ଜୀବନ ଯାପନ କରିବାକୁ ଇଚ୍ଛା କରି ନ ଥିଲେ; ଏହାହିଁ ପ୍ରକୃତ ମନୁଷ୍ୟତ୍ୱ । ଗଙ୍ଗାଧର ମନୁଷ୍ୟ ପରି ମନୁଷ୍ୟ ଥିଲେ । ସେ ଯେଉଁ କାର୍ଯ୍ୟ କରୁଥିଲେ, ତାହା ଯେତେ ଶ୍ରେଷ୍ଠ ହେଉନା କାହିଁକି, ସତ୍ୟ ଓ ନ୍ୟାୟର ସଂଯୋଗରେ ତାକୁ ମହୀୟାନ୍ କରିପାରୁଥିଲେ ।

## —କବିତ୍ୱ—

ଜଗତରେ କେହି କେହି କବିପ୍ରତିଭା ଘେନି ଜନ୍ମଗ୍ରହଣ କରିଥାନ୍ତି । ସେମାନଙ୍କଠାରେ ସ୍ୱତଃ କବିତାର ସ୍ଫୁରଣ ହୋଇଥାଏ । ତାଙ୍କୁ ଆମେ ସରସ୍ୱତୀଙ୍କର ବରପୁତ୍ର କହୁଥାଉଁ । କାହାରି କାହାରିଠାରେ ସାମାନ୍ୟ କବିତ୍ୱ ଶକ୍ତି ଥାଏ । ଅଧ୍ୟୟନ, ଅନୁଶୀଳନ ଓ ଅଭ୍ୟାସଦ୍ୱାରା ତାହାର ବିକାଶ ହୁଏ । କେତେକ ସ୍ଥଳରେ ହୁଏତ ଉତ୍ସାହ ଓ ଅଭ୍ୟାସ ଅଭାବରୁ ସେ କବିତ୍ୱ ବୀଜଟି

ଶୁଷ୍କ ହୋଇଯାଏ । ଗଙ୍ଗାଧର କବିପ୍ରତିଭା ଯେଉଁ ଜନ୍ମଗ୍ରହଣ କରିଥିଲେ । ପାରିପାର୍ଶ୍ୱିକ ଅବସ୍ଥା ତାଙ୍କ ଶକ୍ତିକୁ ଯଥେଷ୍ଟ ଭାବରେ ସାହାଯ୍ୟ କରିଥିଲେ ହୁଏତ ଆଜି ଗଙ୍ଗାଧର ବିଶ୍ୱକବିର ଆସନ ଅଧିକାର କରିଥାନ୍ତେ । କିନ୍ତୁ ଗଙ୍ଗାଧରଙ୍କର ସେ ସୌଭାଗ୍ୟ ନାହିଁ କିମ୍ବା ଓଡ଼ିଆ ଜାତିର ସେ ସୌଭାଗ୍ୟ ନାହିଁ । ତଥାପି ପ୍ରତିକୂଳ ଅବସ୍ଥା ମଧ୍ୟରେ ରହି କେବଳ ଅଧ୍ୟବସାୟ ବଳରେ ସେ ଉତ୍କଳ-ଭାରତୀଙ୍କୁ ଯେଉଁ ଅମୂଲ୍ୟ ରତ୍ନଗୁଡ଼ିକ ସମର୍ପଣ କରି ଯାଇଅଛନ୍ତି, ସେଥିଲାଗି ସେ ଓଡ଼ିଆ ଜାତିର ଚିରସ୍ମରଣୀୟ ହୋଇ ରହିବେ ।

ସମ୍ବଲପୁର ଜିଲ୍ଲା ବାସ୍ତବରେ ଶସ୍ୟ ଉତ୍ପାଦନ ବିଷୟରେ ଓଡ଼ିଶାର ସମ୍ବଲ-ପୁର ବା ଗନ୍ତାଘର । ଏଠାର ଲୋକମାନେ ସାଧାରଣତଃ ପରିଶ୍ରମୀ ଓ ସୁସ୍ଥ ସବଳ । ଶାରୀରିକ ସ୍ୱାସ୍ଥ୍ୟ ଓ ଜୀବିକା ନିର୍ବାହର ସଭାବ ଏଠାର ଲୋକମାନଙ୍କ ମନରେ ପ୍ରଫୁଲ୍ଲତା ଜନ୍ମାଇଥାଏ । ସେମାନଙ୍କଠାରେ ଅସନ୍ତୋଷ ଓ ନୈରାଶ୍ୟ ପ୍ରାୟ ଦେଖାଯାଏ ନାହିଁ । ତେଣୁ ସେମାନେ ସ୍ୱଭାବତଃ ସଙ୍ଗୀତପ୍ରିୟ । ସମ୍ବଲପୁରର ମନୋହର ପ୍ରାକୃତିକ ଦୃଶ୍ୟରାଜି ସେମାନଙ୍କୁ ସଙ୍ଗୀତ-ପ୍ରିୟ କରିଅଛି । ଏହି ଜିଲ୍ଲାର ଅର୍ଦ୍ଧସଭ୍ୟ ବା ଅସଭ୍ୟ ଜାତିମାନଙ୍କ ଭିତରେ ଧୁଡ଼ା ସଙ୍ଗୀତର କମ୍ ପ୍ରଭାବ ଦେଖାଯାଏ ନାହିଁ । ସମ୍ବଲପୁରର କମନୀୟ ପ୍ରକୃତି ଓ ସଙ୍ଗୀତମୟ ପରିସ୍ଥିତି ଗଙ୍ଗାଧରଙ୍କ ହୃଦୟର ସୁପ୍ତ କବିତ୍ୱଶକ୍ତିକୁ ଜାଗ୍ରତ କରାଇଥିଲା । ସେ ପ୍ରାଚୀନ କବିମାନଙ୍କର ପନ୍ଥା ଅନୁସରଣ କରି ପ୍ରଥମେ ଲେଖନୀ ଗ୍ରହଣ କରିଥିଲେ ।

## —ରସରତ୍ନାକର—

ଗଙ୍ଗାଧର ଇଂରାଜୀ ଶିକ୍ଷା ପାଇ ନ ଥିଲେ । ତାଙ୍କର ଆଦର୍ଶ ଥିଲେ ଉପେନ୍ଦ୍ର, ଦୀନକୃଷ୍ଣ, ଅଭିମନ୍ୟୁ ପ୍ରଭୃତି । ଉପେନ୍ଦ୍ର ପ୍ରତି ପଦର ଆଦ୍ୟରେ ଓ ପ୍ରାନ୍ତରେ 'କ' ରଖି "କଳାକଉତୁକ" କାବ୍ୟ ଲେଖିଥିଲେ, ପ୍ରତ୍ୟେକ ପାଦର ଆଦ୍ୟରେ 'ବ' ରଖି "ବୈଦେହୀଶ ବିଳାସ" ଓ 'ସ' ରଖି "ସୁଭଦ୍ରାପରିଣୟ" ଲେଖିଥିଲେ । ଦୀନକୃଷ୍ଣ 'ରସକଲ୍ଲୋଳ'ର ପ୍ରଥମ ଛାନ୍ଦର ଆଦ୍ୟରେ ଓ ପ୍ରାନ୍ତରେ 'କ' ରଖିଥିଲେ ଓ ଅନ୍ୟ ଛାନ୍ଦମାନଙ୍କରେ କେବଳ ଆଦ୍ୟରେ 'କ' ରଖିଥିଲେ । ବ୍ରଜନାଥ ବଡ଼ଜେନା ପ୍ରତି ପାଦର ଆଦ୍ୟରେ 'ଶ' ରଖି "ଶ୍ୟାମରସୋତ୍ସବ" ଲେଖିଥିଲେ । ଗଙ୍ଗାଧର ଏହି ପ୍ରାଚୀନ କବିମାନଙ୍କୁ ଅନୁସରଣ କରି ଆଦ୍ୟରେ ଓ ପ୍ରାନ୍ତରେ 'ର' ରଖି ଲେଖିଲେ "ରସରତ୍ନାକର" । ବିଭିନ୍ନ ବୃତ୍ତିର ଛାନ୍ଦ ସୁନ୍ଦର ଶବ୍ଦ ଯୋଜନା ଓ ବିବିଧ ଅଳଙ୍କାରରେ ମଣ୍ଡିତ ଏହି "ରସରତ୍ନାକର" ଲେଖି କବି ବରପାଲିର ଜମିଦାରଙ୍କ ଗୃହଶିକ୍ଷକ ଶ୍ରୀ ସୂର୍ଯ୍ୟକୁମାର ମିଶ୍ରଙ୍କୁ ଶୁଣାଇଲେ । ସେ ଇଂରାଜୀ ଜାଣିଥିଲେ ଓ ଜଣେ ସାହିତ୍ୟିକ ଭାବରେ ପରିଚିତ ଥିଲେ । ସେ "ରସରତ୍ନାକର" ଶୁଣି ମତ ଦେଲେ ଯେ ଏପରି ପ୍ରାଚୀନ ଧରଣର କାବ୍ୟ ଲେଖିଲେ ପୁସ୍ତକର ଆଦୌ ଆଦର ହେବ ନାହିଁ । ତେଣୁ ଗଙ୍ଗାଧରଙ୍କ ପ୍ରଥମ ପ୍ରଚେଷ୍ଟା ପଣ୍ଡ ହେଲା । ରସରତ୍ନାକରର ପଦଲାଳିତ୍ୟ ଓ ଭାବଗୌରବ କିପରି ଥିଲା ତାହା ନିମ୍ନ ଉଦାହରଣରୁ ଜଣାଯିବ ।

"ରସାଳରେ କରୁ ବିହାର ଅଳି ଏକ ଭ୍ରମର
ରମଣୀମୁଖରେ ବସନ୍ତେ ଝାଡ଼ ଭାଷିଲା ଗିର ।
ରଙ୍ଗପୂର୍ଣ୍ଣ ଫୁଲ୍ଲ କୁସୁମ ମୁଁ ତ ନୁହେଁ ଭ୍ରମର ।
ରସଲୋଭେ ମୋତେ କି ଅର୍ଥେ କପାଁ କରୁ କାତର ?"

## —ଅହଲ୍ୟାସ୍ତବ—

ଗଙ୍ଗାଧର ପ୍ରାଚୀନ ଓଡ଼ିଆ କାବ୍ୟର ଯେପରି ଚର୍ଚ୍ଚା କରିଥିଲେ ସେହିପରି ସଂସ୍କୃତ ସାହିତ୍ୟର ମଧ୍ୟ ଅନୁଶୀଳନ କରି ଥିଲେ । ସେତେବେଳେ ପାରଳାର ବିଖ୍ୟାତ ପଣ୍ଡିତ ଗୋପୀନାଥ ନନ୍ଦ ଓଡ଼ିଆ କବିତାରେ ସଂସ୍କୃତ ଛନ୍ଦର ପ୍ରୟୋଗ କରୁଥିଲେ । ଗଙ୍ଗାଧର ତାଙ୍କୁ ଅନୁସରଣ କରି ସଂସ୍କୃତ ଶାର୍ଦ୍ଦୂଳବିକ୍ରୀଡ଼ିତ ବୃତ୍ତରେ "ଅହଲ୍ୟାସ୍ତବ" ଲେଖି ପ୍ରକାଶ କଲେ । କବିବର ରାଧାନାଥ ଏହାର ଭାଷାକୁ ପ୍ରଶଂସା କରି ପରାମର୍ଶ ଦେଲେ ଯେ ଆଧୁନିକ ରୁଚି ଅନୁସାରେ ଏହାକୁ ବଙ୍ଗଳାଶ୍ରୀ ପରି ସହଜ ରାଗରେ ଲେଖିଲେ ଏହାର ଆଦର ହେବ । ସେତେବେଳେ ଓଡ଼ିଆ ସାହିତ୍ୟରାଜ୍ୟରେ ରାଧାନାଥ ଅପ୍ରତିଦ୍ୱନ୍ଦୀ ସମ୍ରାଟ୍ । ଗଙ୍ଗାଧର ତାଙ୍କ ଉପଦେଶକୁ ଗ୍ରହଣ କରି "ଅହଲ୍ୟାସ୍ତବ"କୁ ପରିବର୍ତ୍ତିତ କରି ବଙ୍ଗଳାଶ୍ରୀ ରାଗରେ ପୁଣିଥରେ ଲେଖିଲେ ।

ପ୍ରଥମେ ଅହଲ୍ୟାସ୍ତବ ସଂସ୍କୃତ ଛନ୍ଦରେ କିପରି ଥିଲା ଓ ପରେ ବଙ୍ଗଳାଶ୍ରୀ ରାଗରେ ପରିବର୍ତ୍ତିତ ହୋଇ କି ଆକାର ଧାରଣ କରିଥିଲା, ତାହାର ଗୋଟିଏ ଉଦାହରଣ ଦିଆ ଯାଉଅଛି ।

ଶାର୍ଦ୍ଦୂଳବିକ୍ରୀଡ଼ିତ ଛନ୍ଦରେ—

ପୃଥ୍ୱୀମଣ୍ଡନ ହେ ଜଗତ୍ପତି ବିଭୋ, ଭକ୍ତଙ୍କ ମୁକ୍ତିଖଣି
ସଂସାରାର୍ଣ୍ଣବ ପାରକାରକୁ ପଟୁ କୈବର୍ତ୍ତଚୂଡ଼ାମଣି
ସାଧୁପାଳନ ଦୁଷ୍ଟନାଶ କରଣେ ସମ୍ଭୂତ ଏ ଭୂତଳେ
ତୁମ୍ଭ ଶ୍ରୀଚରଣାମ୍ବୁଜେ ରହୁ ସଦା ଚିତ୍ତାଳି ମୋ କୌତୁକେ ।

ବଙ୍ଗଳାଶ୍ରୀ ଛନ୍ଦରେ—

ହେ ମହୀମଣ୍ଡନ ଜଗତ ବନ୍ଦନ
ଭକତମୁକତିଦାୟୀ,
ସଂସାର ସାଗର ତାରଣତତ୍ପର
କବିବର୍ଣ୍ଣିତଚୂଡ଼ାମଣି ।

ସାଧବପାଳନ ଦୁଷ୍ଟବିନାଶନ
କାରଣେ ଜାତ ଭୂତଳେ
ତୁମ୍ଭ ଶ୍ରୀଚରଣ- କମଳେ ମୋ ମନ-
ଭ୍ରମର ରହୁ ନିଶ୍ଚଳେ ।

## —ଇନ୍ଦୁମତୀ—

କବିଙ୍କର ଏତତ୍‌ପରବର୍ତ୍ତୀ ରଚନା ଇନ୍ଦୁମତୀ । ସେତେବେଳେ ମୟୂରଭଞ୍ଜର ବିଦ୍ୟୋତ୍ସାହୀ ମହାରାଜାଙ୍କ ଆନୁକୂଲ୍ୟରେ "ଉତ୍କଳପ୍ରଭା" ପତ୍ରିକା ପ୍ରକାଶ ପାଉଥିଲା । ଏଥିରେ ରାଧାନାଥଙ୍କ "ଚିଲିକା" ପ୍ରଥମେ ଦେଖା ଦେଇଥିଲା । ଗଙ୍ଗାଧରଙ୍କ "ଇନ୍ଦୁମତୀ" ମଧ ଏହି ଉତ୍କଳପ୍ରଭାରେ ପ୍ରକାଶିତ ହେଲା ଓ କବି ଏହି ଲେଖାପାଇଁ ପଚିଶଟି ମୁଦ୍ରା ପୁରସ୍କାର ପାଇଥିଲେ । କବିବର ରାଧାନାଥଙ୍କ ଉପଦେଶକୁ ସ୍ମରଣରଖି ଗଙ୍ଗାଧର ଏହାକୁ ବଙ୍ଗଳାଶ୍ରୀ ଛାନ୍ଦରେ ଲେଖିଥିଲେ । ଯାହାହେଉ ଇନ୍ଦୁମତୀର ପ୍ରକାଶଦ୍ୱାରା ଗଙ୍ଗାଧର ଶିକ୍ଷିତ ଉତ୍କଳୀୟ ପାଠକସମାଜରେ ପ୍ରତିଷ୍ଠା ଲାଭ କଲେ । ରାଧାନାଥ ଏହାର ଉଚ୍ଚ ପ୍ରଶଂସା କରିଥିଲେ । ପଲ୍ଲୀକବି ନନ୍ଦକିଶୋର କବିଙ୍କ ପ୍ରଶସ୍ତି ଗାନ କରି ଗୋଟିଏ କବିତା ଲେଖିଥିଲେ । ସେଥିରେ ଥିଲା—

"ଭିକ୍ଷୁଙ୍କ ସଙ୍ଗତେ ନୃପ ମୁକୁଟମଣ୍ଡିତ,
କାଳବଳେ ହେବେ ସର୍ବେ ଭବୁଁ ଅନ୍ତର୍ହିତ;
କିନ୍ତୁ ତୁମ୍ଭେ 'ଦୀନ କବି' ରହିବ ଜୀବିତ
ଯେତେ ଦିନ ଭବେ ଥିବ ଓଡ଼ିଆ ସାହିତ୍ୟ ।"

ଇନ୍ଦୁମତୀ କାବ୍ୟର ବିଷୟବସ୍ତୁ କାଳିଦାସଙ୍କ ରଘୁବଂଶରୁ ଗୃହୀତ । ପ୍ରାଚୀନ ଗ୍ରନ୍ଥରୁ ବିଷୟ ଗ୍ରହଣ କରି ଗଙ୍ଗାଧର ତାହାକୁ ଏପରି ମନୋହରଭାବରେ ଉତ୍କଳୀୟ ପାଠକ ମାନଙ୍କ ନିକଟରେ ଉପସ୍ଥାପିତ କରି ପାରିଥିଲେ ଯେ ଏହାକୁ ପାଠକରି ରାଧାନାଥଙ୍କ ପରି ଜଣେ ବିଜ୍ଞ ସମାଲୋଚକ ଲେଖିଥିଲେ, "ଏ କାବ୍ୟର କବି ସାମାନ୍ୟ ଶକ୍ତିଶାଳୀ ଲେଖକ ନୁହନ୍ତି । ମୂଳତଃ କାଳିଦାସଙ୍କ ରଘୁବଂଶରୁ ସଂଗୃହୀତ ହୋଇଥିଲେହେଁ ଏହାର ଭାବ ଓ ଭାଷା ଦୃଷ୍ଟିରୁ ମୁଁ ଏହାକୁ ଅଭିନବ ଏବଂ ଉତ୍କୃଷ୍ଟ କାବ୍ୟରୂପେ ଗ୍ରହଣ କରିବାକୁ କିଞ୍ଚିନ୍ମାତ୍ର କୁଣ୍ଠିତ ହେବି ନାହିଁ । * * । ମୋ ମତରେ 'ଇନ୍ଦୁମତୀ' ସ୍ୱଭାବସୁନ୍ଦରୀ ଉତ୍କଳ-ଭାରତୀଙ୍କର ଅନୁପଯୁକ୍ତ ଭୂଷଣ ନୁହେଁ ।"

ଇନ୍ଦୁମତୀ-ବିୟୋଗବିଧୁର ଅଜଙ୍କର ବିଳାପ କିପରି କରୁଣ ରସସିକ୍ତ ହୋଇଅଛି, ତାହାର ଅଭାସ ନିମ୍ନୋଦ୍ଧୃତ ପଙ୍‌କ୍ତି-ମାନଙ୍କରୁ ମିଳିପାରିବ ।

"ଫୁଲମାଳ ଗୃହିଁ ବୋଲନ୍ତି, ଅହା କି
ଅଦ୍ଭୁତ ମୋର କପାଳେ ।
ପ୍ରିୟ ଗଳାହାର ଗଳା କାଟିବାର
ଶୁଣା କାହିଁ କେଉଁକାଳେ ?

ଏହିପରି ଏକ ପୁଷ୍ପମାଳ ମୋତେ
ପ୍ରିୟା ସଙ୍ଗେ କଲା ଯୋଗ
ଏହି ପୁଷ୍ପମାଳ ଅଜ ମୋହଠାରୁ
ପ୍ରିୟାକୁ କଲା ବିଯୋଗ ।
ଏଣୁ ବିଚାରିଲି ସୌଭାଗ୍ୟ ସମୟେ
ସମ୍ପଦରେ ଯାକୁ ଗଣି
ଅଭାଗ୍ୟ ସମୟେ ସେହି ପୁଣି ହୁଏ
ସବୁ ବିପଦର ଖଣି ।
ଜଳରୁ ଜନମି ପଦ୍ମିନୀ-ସୁନ୍ଦରୀ
ଥରେ ଚହଟାଏ ବାସ
ସମୟରେ ପୁଣି ସେହି ଜଳକଣା
ପଦ୍ମିନୀକି କରେ ନାଶ ।”

## —ଉତ୍କଳଲକ୍ଷ୍ମୀ—

ଗଙ୍ଗାଧର ପ୍ରକୃତିର ପୂଜକ ଥିଲେ । ଦେଶପ୍ରେମ ତାଙ୍କର ଅସ୍ଥିମଜ୍ଜାଗତ ଥିଲା । ସେ ବିବିଧ ପ୍ରାକୃତିକ ସୁଷମା-ମଣ୍ଡିତ ଉତ୍କଳ-ଭୂମିକୁ ଅମରଭୁବନର ଲକ୍ଷ୍ମୀରୂପରେ କଳ୍ପନା କରୁଥିଲେ । ପ୍ରକୃତିଦେବୀ ଉତ୍କଳଲକ୍ଷ୍ମୀଙ୍କର ଚରଣସେବାରେ ନିରନ୍ତର ନିଯୁକ୍ତା । ଏହି ଅପୂର୍ବ ସୌନ୍ଦର୍ଯ୍ୟମୟୀ ମାତୃଭୂମିର ବର୍ଣ୍ଣନା କରି ଗଙ୍ଗାଧର "ଉତ୍କଳଲକ୍ଷ୍ମୀ" ଲେଖିଥିଲେ । ଏହା ୧୮୯୪ରେ ଅଂଶିକ ପ୍ରକାଶିତ ହୋଇଥିଲା । ୧୯୧୪ ମସିହାରେ ଏହା ପୂର୍ଣ୍ଣତା ଲଭିକରି ସମ୍ବଲପୁରର ବରପୁତ୍ର ଶ୍ରୀ ବ୍ରଜମୋହନ ପଣ୍ଡାଙ୍କ ଅନୁକୂଲ୍ୟରେ ପ୍ରକାଶିତ ହୋଇଥିଲା । ଏଥିରେ କବିଙ୍କ ପ୍ରକୃତିବର୍ଣ୍ଣନାର ଚାତୁରୀ ଓ କଳ୍ପନାର ମୋହନ ବିଳାସ ପରିସ୍ଫୁଟ । କବିଙ୍କ ଭାଷାରେ ଉତ୍କଳଲକ୍ଷ୍ମୀଙ୍କୁ—

"ବସନ୍ତ ଯୋଗାଏ ମୁକୁଳ ମାଧବୀ
କଞ୍ଚନ ନବମଲ୍ଲିକା
ସୌରଭ ଲୋଭରେ ନ ଛାଡ଼ନ୍ତି କ୍ଷଣେ
ଯା ପଛ ଅଳିମାଳିକା ।
ଗ୍ରୀଷ୍ମ ଦିଏ ସୁର- ବାଞ୍ଛିତ ଚମ୍ପକ
ବକୁଳ ନବମାଳିକା
ବରଷା କୁଟଜ କୁସୁମସ୍ତବକ
ସହିତେ ଜାତି ଯୂଥିକା ।
ଶରତ କେତକୀ କୁମ୍ଭଦେ, ହେମନ୍ତ
ଶତବର୍ଗେ ତୋଷ କରେ
ଶିଶିର-ପୁଞ୍ଜଇ ସୁନ୍ଦର ସେବତୀ
ସହ ଆମ୍ର ବଉଳରେ ।"

ଏଥିରୁ କବିଙ୍କର ବର୍ଣ୍ଣନାଶକ୍ତି ଅନୁମିତ ହୋଇପାରେ ।

## —କୀଚକବଧ—

ବିଜେପୁରର ଜମିଦାରଙ୍କ ନିକଟରେ ମୋହରର ଥିବା ସମୟରେ ଗଙ୍ଗାଧର ପୁତ୍ର-ଶୋକରେ ବ୍ୟାକୁଳ ହୋଇ ପଡ଼ିଥିଲେ । ଜମିଦାରଙ୍କ ସାଗ୍ରହ ଅନୁରୋଧରେ ଗଙ୍ଗାଧର ଏହି ସମୟରେ 'କୀଚକବଧ' ଲେଖିଥିଲେ । ସେତେବେଳେ ନୀଳମଣି ବିଦ୍ୟାରତ୍ନଙ୍କ ସମ୍ପାଦନାରେ ରମ୍ଭାଠାରୁ "ପ୍ରଜାବନ୍ଧୁ" ନାମକ ପତ୍ରିକା ପ୍ରକାଶ ପାଉଥିଲା । କବିବର ରାଧାନାଥ "କୀଚକବଧ"ର ପାଣ୍ଡୁଲିପି ପାଠ କରି ପ୍ରଶଂସାସୂଚକ ମନ୍ତବ୍ୟ ପ୍ରକାଶ କଲେ । ନୀଳମଣି ବିଦ୍ୟାରତ୍ନ ମଧ୍ୟ "ପ୍ରଜାବନ୍ଧୁ"ରେ ଏହା ସମ୍ବନ୍ଧରେ ଅନୁକୂଳ ମତ ବ୍ୟକ୍ତ କଲେ । ଉତ୍କଳର ବରେଣ୍ୟ ମଧୁସୂଦନ

ଦାସ ସି. ଆଇ. ଇ. ମହୋଦୟ ପୁସ୍ତକର ମୁଦ୍ରଣବ୍ୟୟ ବହନ କରିବାରୁ ଏହା ୧୯୦୪ ମସିହାରେ ପ୍ରକାଶିତ ହେଲା ।

ଏହି ପୁସ୍ତକଟି ସାତ ସର୍ଗରେ ବିଭକ୍ତ ଏବଂ ବିଭିନ୍ନ ସର୍ଗ ବିଭିନ୍ନ ଛନ୍ଦରେ ଲିଖିତ । ଏହାର ବିଷୟବସ୍ତୁ ମହାଭାରତରୁ ଗୃହୀତ । କବିଙ୍କର ଭାବ ଓ ଭାଷା କିପରି ଭାବରେ ଗତି କରିଅଛି ତାହା ନିମ୍ନୋଦ୍ଧୃତ ପଂକ୍ତିରୁ କିପୃତ୍ ପରିମାଣରେ ଜଣା ପଡ଼ିବ ।

"ସୁଧାକର-ପ୍ରୀତି- ପ୍ରଫୁଲ୍ଲବଦନା
ସୁଧାଂଶୁ ଚିତ୍ତମୋହିନୀ
ଚନ୍ଦ୍ର ଅନୁଦୟେ ତମିର ସଂଗମେ
ନ ଫୁଟେ କି କୁମୁଦିନୀ ?"

ପ୍ରଭାତ ବର୍ଣ୍ଣନା—

"ଅଇଲା ଉଷା ଯୋଷିତ କୁସୁମେ ହୋଇ ଭୂଷିତ
ଭ୍ରମର ଅଞ୍ଜନାଞ୍ଚିତ ପଦ୍ମନୟନା
ବିହଙ୍ଗ ସ୍ୱନ କଙ୍କିଣୀ ନାଦ୍ଧିଲ କଣି କଣି
ଜୀବଚିତ୍ତ ନେଲା କିଣି କୁନ୍ଦଦଶନା
ଅରୁଣ ଚରଣ ସୁନ୍ଦର
ପ୍ରଭାତ ତାରକା ମଥାମଣି ଭାସ୍ୱର ।"

## —କବିତାକଲ୍ଲୋଳ—

ବେଦବ୍ୟାସ, ଚନ୍ଦ୍ରରଜନୀ, ବସନ୍ତବାସର ପ୍ରଭୃତି କେତେକ କବିତା "କବିତାକଲ୍ଲୋଳ" ରେ ସନ୍ନିବିଷ୍ଟ । ଏହା ୧୯୧୨ ମସିହାରେ ପ୍ରକାଶିତ ହୋଇଥିଲା ଏବଂ କବିବର ରାଧାନାଥଙ୍କୁ ଉତ୍ସୃଷ୍ଟ ହୋଇଥିଲା ।

## —ପଦ୍ମିନୀ—

ରାଜପୁତ ରମଣୀମାନଙ୍କ ମଧ୍ୟରେ ଅଗ୍ରଗଣ୍ୟା ପଦ୍ମିନୀଙ୍କର ମହିମମୟ ଚରିତ ବର୍ଣ୍ଣନା କରି କବି ଗୋଟିଏ ବଡ଼ କାବ୍ୟ ଲେଖିବାର କଳ୍ପନା କରିଥିଲେ । ଏହାର କେତେକ ସର୍ଗ ତତ୍କାଳୀନ "ମୁକୁର" ପତ୍ରିକାରେ ପ୍ରକାଶ ପାଇଥିଲା । ମାତ୍ର କାବ୍ୟଟିକୁ ପୂର୍ଣ୍ଣାଙ୍ଗ କରିବା ପାଇଁ କବି ସୁଯୋଗ ପାଇ ନ ଥିଲେ ।

## —କୃଷିଗୀତ—

ବୋଡ଼ାଶମ୍ବର ଜମିଦାରଙ୍କ ପ୍ରେରଣାରେ ଗଙ୍ଗାଧର କୃଷି ସମ୍ବନ୍ଧରେ ଅନେକଗୁଡ଼ିଏ କବିତା ଲେଖିଥିଲେ । କୃଷକ ସମାଜର ଉନ୍ନତି ନ ହେଲେ ଜାତିର ଉନ୍ନତି ଅସମ୍ଭବ, ଏହା ହୃଦୟଙ୍ଗମ କରି କବି ଏହି କବିତାଗୁଡ଼ିକ ଲେଖିଥିଲେ । ଏଗୁଡ଼ିକ 'କୃଷିଗୀତ' ନାମରେ ପୁସ୍ତକ ଆକାରରେ ୧୯୨୧ ମସିହାରେ ପ୍ରକାଶିତ ହୋଇଥିଲା । ପୁସ୍ତକଟି ବୋଡ଼ାଶମ୍ବରର ରାଜା ଲାଲ୍ ରାଜେନ୍ଦ୍ର ସିଂହ ବରିହାଙ୍କୁ ଉତ୍ସର୍ଗ ହୋଇଥିଲା ।

## —ପ୍ରଣୟବଲ୍ଲରୀ—

"ପ୍ରଣୟବଲ୍ଲରୀ"ର କଥାବସ୍ତୁ କାଳିଦାସଙ୍କ ରଚିତ ଅଭିଜ୍ଞାନ-ଶକୁନ୍ତଳା ନାଟକରୁ ଗୃହୀତ; କିନ୍ତୁ ରଚନା-ପରିପାଟୀ କବିଙ୍କର ନିଜସ୍ୱ । ଏହି କାବ୍ୟଟିରେ ଶକୁନ୍ତଳା-ଦୁଷ୍ମନ୍ତଙ୍କର ପ୍ରଣୟକୁ ବଲ୍ଲରୀ ରୂପରେ ଉପସ୍ଥାପିତ କରାଯାଇ ପ୍ରଣୟର ବିଭିନ୍ନ ସୋପାନକୁ ଅଙ୍କୁର, ପଲ୍ଲବ, ପ୍ରସୂନ, ସୌରଭ, ପୁଷ୍ପେ-କୀଟ, ଫଳ ଓ ଛାୟା ରୂପେ ପ୍ରତିପାଦନ କରାଯାଇଛି । ଶକୁନ୍ତଳା ନାଟକ ସାତଟି ଅଙ୍କରେ ବିଭକ୍ତ ହେଲା ପରି ଏହି କାବ୍ୟଟି ମଧ୍ୟ ସାତଟି ସର୍ଗରେ ବିଭକ୍ତ ।

ଶକୁନ୍ତଳା ନାଟକ ଉପରେ ପ୍ରତିଷ୍ଠିତ ହେଲେହେଁ ଏଥିରେ କବିଙ୍କର ଗମ୍ଭୀର ମନସ୍ତାତ୍ତ୍ୱିକ ବିଶ୍ଳେଷଣ, ପ୍ରକୃତିର ମନୋହର ଚିତ୍ରଣ, କଳ୍ପନାର ଗୁରୁତ୍ୱ ଦେଖିବାକୁ ମିଳେ । ଅନେକ ସ୍ଥଳରେ ସେ କାଳିଦାସଙ୍କ ଅନୁସରଣ ନ କରି ସ୍ୱତନ୍ତ୍ର ପନ୍ଥା ଅବଲମ୍ବନ କରିଅଛନ୍ତି । ମାର୍ଜିତ ଭାଷା, ସୁନ୍ଦର ଅଳଙ୍କାରର ସମାବେଶ, ଭାବର ଗଭୀରତା, ଜନ୍ମଭୂ ଧରଣୀର ପ୍ରକୃତିଚିତ୍ରଣ ପ୍ରଭୃତି ଗୁଣରେ ଭୂଷିତ ହୋଇଥିବାରୁ "ପ୍ରଣୟବଲ୍ଲରୀ" ଓଡ଼ିଆ ସାହିତ୍ୟରେ ଚିରକାଳ ଉଚ୍ଚ ସ୍ଥାନ ଅଧିକାର କରିବ । ନିମ୍ନରେ ଏଥିରୁ କେତୋଟି ପଦ ଉଦ୍ଧାର କରାଗଲା ।

"ସ୍ନିଗ୍ଧବହୁଳତ ଲମ୍ଫେ କୃଷ୍ଣସାର
ଗଗନେ ଅଧିକ ଯାଇ
ଥରେ ଥରେ ମାତ୍ର ଦେଉଥାଏ ବନ-
ଭୂମିରେ ପାଦ ପକାଇ ।
ପୁଚ୍ଛ ଲମ୍ପଟାଇ ସ୍ଫୀତ ସଙ୍କୁଚିତ
ଅଶୁଗ ପତନ ଭୟେ
ଗ୍ରୀବା ଭଙ୍ଗି ଥରେ ଥରେ ରଥେ ଚାହିଁ
ପଳାଏ ପୂର୍ଣ୍ଣ ଅଥୟେ ।
ଶ୍ରମ-ବିବୃତ- ମୁଖ-ଚ୍ୟୁତ-ଦର-
ଚର୍ବିତ କୁଶମାନ
ଗମନ ପଥରେ ଇତସ୍ତତଃ ପଡ଼ି
ଯାଉଥାଏ ସ୍ଥାନ ସ୍ଥାନ ।"

"ପ୍ରଣୟବଲ୍ଲରୀ" ୧୯୧୬ ମସିହାରେ ପ୍ରକାଶିତହୋଇ-ଥିଲା ଓ ଏହାର ମୁଦ୍ରଣବ୍ୟୟ ବୋଡ଼ାଶମ୍ବରର ଜମିଦାର ବହନ କରିଥିଲେ ।

## —ତପସ୍ୱିନୀ—

କବିଙ୍କର "ତପସ୍ୱିନୀ" କାବ୍ୟଟି ଉତ୍କଳସାହିତ୍ୟ ଭଣ୍ଡାରର ଗୋଟିଏ ସମୁଜ୍ଜ୍ୱଳ ମଣି । ଅଯୋଧ୍ୟାର ରାଜଭୋଗ ତ୍ୟାଗ କରି ପତିଙ୍କ ସହ ବନଗାମିନୀ ହେବା ଦ୍ୱାରା ସୀତାଙ୍କର ଯେଉଁ ମହତ୍ତ୍ୱ ପ୍ରକଟିତ ହୋଇଥିଲା, ପତିଙ୍କ ଦ୍ୱାରା ପରିତ୍ୟକ୍ତା ହୋଇ ବାଲ୍ମୀକିଙ୍କ ଆଶ୍ରମରେ ତପସ୍ୱିନୀ ଜୀବନ ଯାପନ କରିବା ଦ୍ୱାରା ତାହା ଶତଗୁଣିତ ହୋଇଥିଲା । ସୀତାଙ୍କର ଏହି ମହନୀୟ ଚରିତ ବାଲ୍ମୀକିଙ୍କ ରାମାୟଣ ତଥା ଭବଭୂତିଙ୍କ ଉତ୍ତର-ରାମଚରିତରେ ବର୍ଣ୍ଣିତ । ଗଙ୍ଗାଧର ରାମାୟଣ ଅପେକ୍ଷା ଉତ୍ତର-ରାମଚରିତକୁ ବେଶି ପରିମାଣରେ ଅନୁସରଣ କରି ତପସ୍ୱିନୀ କାବ୍ୟ ଲେଖିଥିଲେ ବୋଲି ଅନୁମିତ ହୁଏ । କାବ୍ୟଟି ଏକାଦଶ ସର୍ଗ-ବିଶିଷ୍ଟ ଓ ସର୍ଗଗୁଡ଼ିକ ବିଭିନ୍ନ ଛନ୍ଦରେ ଲିଖିତ । କବିଙ୍କର ପ୍ରକୃତି-ବର୍ଣ୍ଣନାର ବୈଶିଷ୍ଟ୍ୟ ଏଥିରେ ବିଶେଷଭାବରେ ଲକ୍ଷ୍ୟ କରିବାର କଥା । ତାଙ୍କ ଦୃଷ୍ଟିରେ ପ୍ରକୃତି ଜଡ଼ ନୁହେଁ, ତାର ମଧ୍ୟ ମାନବ ପରି ହୃଦୟ ଅଛି । ସେ ମଧ୍ୟ ସୁଖ, ଦୁଃଖ, କ୍ରୋଧ, ଅନୁରାଗ ପ୍ରକାଶ କରେ; ମାନବର ସୁଖ ଦୁଃଖରେ ସହାନୁଭୂତି ଜଣାଏ । ଗଙ୍ଗାଧର କବି-ଦୃଷ୍ଟିରେ ଦେଖିଅଛନ୍ତି—

"ମଙ୍ଗଳେ ଅଇଲା ଉଷା　　ବିକଚ-ରାଜୀବ-ଦୃଶା-
ଜାନକୀଦର୍ଶନ-ତୃଷା ହୃଦୟେ ବହି
କର-ପଲ୍ଲବେ ନୀହାର-　　ମୁକ୍ତା ଧରି ଉପହାର
ସୀତାଙ୍କ ବାସବାଟୀର ପ୍ରାଙ୍ଗଣେ ରହି
କଳକଣ୍ଠ କଣ୍ଠେ କହିଲା
ଦରଶନ ଦିଅ ସତି, ରାତି ପାହିଲା ।

ଅରୁଣ କଷାୟ ବାସ କୁସୁମ କାନ୍ତ ବିକାଶ
ପ୍ରଶାନ୍ତ ରୂପ, ବିଶ୍ୱାସ ଦିଅନ୍ତ ମନେ
କେଉଁ ଯୋଗେଶ୍ୱରୀ ଅସି ମଧୁର ଭାଷେ ଆଶ୍ୱାସି
ଡାକୁଛନ୍ତି ଦୁଃଖୀରାଣି ଜୀବଗଣମନେ,
ଦେବାପାଇଁ ନବଜୀବନ
ସ୍ୱର୍ଗୁଁ କି ଓହ୍ଲାଇଛନ୍ତି ମର୍ତ୍ତ୍ୟଭୁବନ ।"
କିଏ କହିବ ଏ ଉଷା ଜଡ଼, ଅଚେତନ ।

କବିଙ୍କର ସୀତା ଭାରତର ଆଦର୍ଶ ରମଣୀ ରୂପରେ ପ୍ରତିଷ୍ଠିତ ।

## —ଅର୍ଘ୍ୟଥାଳୀ—

କବି ଗଙ୍ଗାଧର କେବଳ କାବ୍ୟ ଲେଖିବାରେ ନିଯୁକ୍ତ ନ ଥିଲେ । ତତ୍‌କାଳୀନ ସାମୟିକ ପତ୍ରିକା "ଉତ୍କଳସାହିତ୍ୟ" "ମୁକୁର" ପ୍ରଭୃତିରେ ସେ ନିୟମିତରୂପେ କବିତା ପ୍ରକାଶ କରିଥିଲେ । ସେମାନଙ୍କ ମଧ୍ୟରୁ କେତେକ ସଂଗୃହୀତ ହୋଇ ୧୯୧୮ ମସିହାରେ ଅର୍ଘ୍ୟଥାଳୀ ନାମରେ ପ୍ରକାଶିତ ହୋଇଥିଲା । ପାରଳା ମହାରାଜାଙ୍କ ନାମରେ ଏହା ଉତ୍ସର୍ଗ କରାଯାଇଥିଲା । ଏଥିରେ କବିଙ୍କର ସାମୟିକ ଚିନ୍ତାପ୍ରସୂତ ୩୯ ଗୋଟି କବିତା ନିହିତ ଅଛି । ଏହି କବିତାମାନଙ୍କ ମଧ୍ୟରୁ ଅଧିକାଂଶ ଜନ-କୋଠୀର ଏବଂ ଶିକ୍ଷାପ୍ରଦ । ଏହି ପୁସ୍ତକର ଭକ୍ତିଶୀର୍ଷକ କବିତାଟିରୁ କବିଙ୍କର ଭକ୍ତିମତ୍ତାର ପରିଚୟ ମିଳେ ।

"ବିଶ୍ୱ ଜୀବନ ହେ, ତୁମ୍ଭଙ୍କ କରୁଣାସିନ୍ଧୁ
ବୋଲିବାକୁ ମନ ବଳୁ ନାହିଁ ଯେଣୁ
ସିନ୍ଧୁ ତୁମ୍ଭ କୃପାବିନ୍ଦୁ । ଘୋଷା ।

ତୁମ୍ଭ ଭଜନରେ ହେବ ନାହିଁ ନାଥ !
ମାଳା ଜପିବାକୁ ବାଧ
କୋଟି କୋଟି ଗ୍ରହ କଣ୍ଠି ସେ ମାଳାର
କେ ଜପି କରିବ ସାଧ ?
ଦେଇ ନାହଁ ବଳ ପଦଧୂଳି ନେବ
ପାରିବ ନାହିଁ ମୋ ମୂଣ୍ଡ
କୋଟି କୋଟି ରବି ଧୂଳି ରୂପେ ତୁମ୍ଭ
ପାଦେ ହୋଇଛନ୍ତି ଲୁଣ୍ଠ ।
ହୃଦୟର କଥା ଜାଣିବାକୁ ଅଛି
ତୁମ୍ଭର ଅସୀମ ଶକ୍ତି
ସେତିକି ନେବ ଯେତିକି ଅଛି ମୋ
ହୃଦେ ତୁମ୍ଭପ୍ରତି ଭକ୍ତି ।"

## —ଭାରତୀ ଭାବନା—

"ଭାରତୀଭାବନା" କବିଙ୍କର ଶେଷ ରଚନା ବୋଲି ଅନୁମିତ ହୁଏ । ବ୍ରିଟିଶ ରାଜତ୍ୱର କୁପରିଣାମ କବି ଭଲରୂପେ ହୃଦୟଙ୍ଗମ କରିଥିଲେ । ସ୍ୱାଧୀନତା ଆନ୍ଦୋଳନ ଚାଲିଥିବାବେଳେ କବି ଏହି କବିତାଟିରେ ବ୍ରିଟିଶ ଶାସନର କୁଫଳ ବର୍ଣ୍ଣନା କରିଅଛନ୍ତି । ଏହା ଆମୂଳଚୂଳ ଶ୍ଳେଷ ଅଳଙ୍କାରରେ ପୂର୍ଣ୍ଣ । ଗୋଟିଏ ଅର୍ଥରେ ଶ୍ରୀକୃଷ୍ଣଙ୍କୁ ଲକ୍ଷ କରାଯାଇଅଛି ଓ ଅନ୍ୟ ଅର୍ଥରେ ବ୍ରିଟିଶ ସରକାର ଲକ୍ଷିତ । କବିତାଟିରୁ କବିଙ୍କର ଜାତୀୟଭାବ ତଥା କବିତ୍ୱଶକ୍ତି ଜଣା ପଡ଼େ ।

ଗଙ୍ଗାଧର ଇହଧାମରୁ ବିଦାୟ ନେଇ ଯାଇଛନ୍ତି; କିନ୍ତୁ ସେ ଉତ୍କଳସାହିତ୍ୟ-ଭଣ୍ଡାରରେ ଯେଉଁ ଅମୂଲ୍ୟ ରତ୍ନସବୁ ସାଇତି

! . . .

ରଖି ଯାଇଛନ୍ତି ସେସବୁ ଅକ୍ଷୟ, ଅବିନଶ୍ୱର । କବିଙ୍କର ନଶ୍ୱର ଶରୀର ଧ୍ୱଂସ ପାଇଯାଇଅଛି । ତାଙ୍କର ଭାଷାରେ—

"କିନ୍ତୁ ତୁମ୍ଭେ ଦାନ କରି ? ରହିବ ଜୀବନ
ଯେତେ ଦିନ ଭବେ ଥିବ ଓଡ଼ିଆ ସାହିତ୍ୟ ।"



ମୁଦ୍ରାକର ଶ୍ରୀ ଘନଶ୍ୟାମ ଦାଶ, ନିଉ ଷ୍ଟୋର୍ସ ପ୍ରେସ୍, ବ୍ରହ୍ମପୁର

ଓଡ଼ିଶାର ପ୍ରସିଦ୍ଧ ଶସ୍ତ୍ର ସାହିତ୍ୟିକମାନଙ୍କ ଦ୍ୱାରା ସଂକଳିତ

# ଅମର ଚରିତ ମାଳା

ଶ୍ରୀ ଗୋଦାବରୀଶ ମହାପାତ୍ରଙ୍କ ଲିଖିତ—

୧ । ଖାରବେଳ
୨ । ଫକୀରମୋହନ
୩ । କପିଳେନ୍ଦ୍ର ଦେବ
୪ । ପ୍ରତାପରୁଦ୍ର ଦେବ
୫ । ଶ୍ରୀରାମଚନ୍ଦ୍ର ଭଞ୍ଜ

ଶ୍ରୀ କୃଷ୍ଣଚନ୍ଦ୍ର କରଙ୍କ ଲିଖିତ—

୬ । ଭକ୍ତକବି ମଧୁସୂଦନ
୭ । ସୂଢ଼ଳ ଦେବ
୮ । ମୁକୁନ୍ଦ ଦେବ
୯ । ପୁରୁଷୋତ୍ତମ ଦେବ
୧୦ । ରାଧାନାଥ
୧୧ । କୁଳବୃଦ୍ଧ ମଧୁସୂଦନ
୧୨ । ଉତ୍କଳମଣି ଗୋପବନ୍ଧୁ
୧୩ । ଚନ୍ଦ୍ରଶେଖର
୧୪ । ଶୂଦ୍ରମୁନି ସାରଳା

ଅଧ୍ୟାପକ ଶ୍ରୀଧର ଦାସଙ୍କ ଲିଖିତ—

୧୫ । ଗଙ୍ଗାଧର ମେହେର
୧୬ । ଭବପୂର୍ଣ୍ଣ
୧୭ । ସାଧୁ ସୁନ୍ଦର ଦାସ

ଶ୍ରୀ ଭଗବାନ ପତିଙ୍କ ଲିଖିତ—

୧୮ । ଚପାଳଦେବେଶ୍ୱରୀ
୧୯ । ନରସିଂହ ଦେବ
୨୦ । ଜୟଦେବ
୨୧ । ଚୋଳଗଙ୍ଗଦେବ

ଶ୍ରୀ ଚିନ୍ତାମଣି ଆଚାର୍ଯ୍ୟଙ୍କ ସମ୍ପାଦିତ

୨୨ । ବିଶ୍ୱନାଥ କର ( ଆତ୍ମଚରିତ ସମ୍ବଳିତ )

ପ୍ରତ୍ୟେକର ମୂଲ୍ୟ ଛଅ ଅଣା

ଏହି ଚରିତ ମାଳାରେ ଉତ୍କଳର ଆଉ ଅନେକ ଅମର ଜୀବନୀ ପ୍ରକାଶ ପାଉଅଛି ।